କବିବର ଦୀନକୃଷ୍ଣ ଦାସଙ୍କ ବିରଚିତ

ସଚିତ୍ର

# ଭୂତକେଳି ।

ଶ୍ରୀମୋହନ ଚରଣ ଦାସଙ୍କ ଦ୍ୱାରା
ଦ୍ୱିତୀୟବାର ପ୍ରକାଶିତ ।



Printed by M. Ch. Das.
At THE MANAMOHAN PRESS
CUTTACK.
1925.

ମୂଲ୍ୟ ୦ ୦ ୵ ଦୁଇଅଣା ମାତ୍ର ।

# ଭୂତକେଳି ।

ଏଥୁ ଅନନ୍ତରେ ପରୀକ୍ଷିତ ନାମେ ରାଜା । ଶୁକମୁନି ପାଦତଳେ
କଲେ ସେବା ପୂଜା । ୧ । ଧୂପ ଦୀପ ନଇବେଦ୍ୟ ଗନ୍ଧ ପୁଷ୍ପ ଦେଲେ ।
ନବରତ୍ନ ମାଳା ନେଇ କଣ୍ଠେ ଲମ୍ବାଇଲେ । ୨ । କୃତକୃତ୍ୟ ହୋଇଣ
ବୋଲନ୍ତି ନୃପବର । ମହାବେଦ୍ୟବାନ ମୋତେ ଅନୁଗ୍ରହ କର । ୩ ।
ଭାଗବତ ଚରିତ କହିବା ଦିବ୍ୟବାଣୀ । ମହା ପାପ ଖଣ୍ଡିବ ଶ୍ରୀକୃଷ୍ଣ କଥା
ଶୁଣି ॥ ଷୋଳସହସ୍ର ଗୋପୀଙ୍କି ଘେନି ଦାଶରଥୀ । ଗୋପକ୍ରୀଡ଼ା
ବିନୋଦ କଲେ ଯେ ଦିନରାତ୍ରି । ୫ । ଚନ୍ଦ୍ରସେନା ଘରେ ଯେ ରହିଲେ
ବନମାଳୀ । କେମନ୍ତ ପ୍ରକାରେ କୃଷ୍ଣ କଲେ ଭୂତକେଳି । ୬ । ଏହା
ମୋତେ ସଂକ୍ଷେପି କହିଲେ ମହାମୁନି । ମହାପାପ ଖଣ୍ଡିବ ଶ୍ରୀକୃଷ୍ଣ କଥା
ଶୁଣି । ୭ । ଶୁକମୁନି ବୋଇଲେ ପରୀକ୍ଷିତ ନୃପବର । ଯାହା ପୁଚ୍ଛିଲୁ
ତାହା ସାବଧାନେ ଶୁଣ । ୮ । ଏକମନ ହୋଇ ଶୁଣ ଅଭିମନ୍ୟୁ ବଳା ।
ଗୋପକ୍ରୀଡ଼ା କଥା ଏ ଶ୍ରୀକୃଷ୍ଣ ବାଲ୍ୟଲୀଳା । ୯ । ଆଉ ଅନ୍ତ କଥା ଯେ
ଅଟଇ ଅପ୍ରମେୟ । ଠିକଠିକ କରି ତୋତେ କହିବା କଥାଏ । ୧୦ ।
ଏକ ଦିନେ ଶ୍ରୀକୃଷ୍ଣ କଦମ୍ବମୂଳେ ଥିଲେ । କାଖେ କୁମ୍ଭ ଘେନି ରାଧା
ଯମୁନାକୁ ଗଲେ । ୧୧ । ରାଧିକାଙ୍କୁ ଚାହିଁଣ ବୋଲନ୍ତି ବନମାଳୀ ।
ଅଜ ତୋର ପୁରକୁ ତୋ ଯିବୁଁ ନବବାଳୀ । ୧୨ । ରାଧିକା ବୋଇଲେ
ପ୍ରଭୁ କେତେବେଳେ ଯିବ । ଆସ୍ତି ନାସ୍ତି ବାରତା ନିଷ୍ଟୟେ କହିଥିବ ॥
ଶ୍ରୀକୃଷ୍ଣ ବୋଇଲେ ନିଶି ପାହୁଡ଼ଠାରେ । ଅର୍ଦ୍ଧେ ଯେ ବିଜୟ
କରିବୁଁ ତୋରପୁରେ । ୧୪ । ଚନ୍ଦ୍ରସେଣା ଶଯ୍ୟାଗୃହ ଗୋଟୋଷ୍ଟୁ ଥିବ
ରହି । ଶୁଚିବନ୍ତ ହୋଇଣ ପଲଙ୍କେ ଥିବୁ ଶୋଇ । ୧୫ । ଏହା ଶୁଣି
ରାଧିକା ଯେ ବେଗେ ଚଳିଗଲା । ନୀର କୁମ୍ଭ ଘେନି ଘରେ ପ୍ରବେଶ
ହୋଇଲା । ୧୬ । ବେଳ ବୁଡ଼ି ରଜନୀ ହୋଇଲା ଘୋର ଘନ ।

ବାହାର ହୋଇଲେ ପ୍ରଭୁ ଶୁଭଲଗ୍ନ ଦେଖି । ୧୭ । ବେଶରେ ଯେ ରାଧିକାଙ୍କୁ କୃଷ୍ଣ କହିଥିଲେ । ଆମ୍ଭେ ନିଶ୍ଚୟ ଯିବୁଟି ଚନ୍ଦ୍ରସେଣା ଗେହେଲି ॥ ଅମାବାସ୍ୟା ରଜନୀ ଯେ ଯେ ଧନ ଅଟଇ । ଚନ୍ଦ୍ରସେଣା ବୋଇଲି ରାଧିକା ମୁଖ ଚାହିଁ । ୧୯ । ମହାନିଶି ଅନ୍ଧାର ହୋଇବ ଏହି ସଞ୍ଜଣି । କେତେବେଳେ ଗୋଗୋଷ୍ଠକୁ ଯିବ ଗୋପାଳୁଣୀ । ୨୦ । ସୁବର୍ଣ୍ଣଥାଳିରେ ଅନ୍ନ ପୂରାଇ ଭୁଞ୍ଜେ । ବହନ କରିଣ ଗୋ ବଢ଼ାଇ ଦିଅ ମୋତେ । ୨୧ । ସଜାଡ଼ି କରିଣ ମୋତେ ଦିଅ ଚନ୍ଦ୍ରାନନ । ଘଣ୍ଟି ଯେ ଦାଗୁଡ଼ି ମୋର କଟିର ବାନ୍ଧିଣ । ୨୨ । ଶିକା ଯେ ବାନ୍ଧିଛି ବେଗେ ବାଟରେ ଥୋଇଣ ॥ କାଠିକଣରୁ ରାଧା କେନ୍ଦୁ ବାଛି ଅଣ । ୨୩ । ଚନ୍ଦ୍ରସେଣା ବଚନେ ରାଧିକା ଚଳିଗଲେ । ସଜାଡ଼ି କରିଣ ସବୁ ବଢ଼ାଇଣ ଦେଲେ ॥ ବଇଷ୍ଣବୀ ମାୟା ଯେ ଶ୍ରୀକୃଷ୍ଣ ଭିଆଇଲେ ଚନ୍ଦ୍ରସେଣ ମନକୁ ଉଚ୍ଚାଟ କରାଇଲେ । ୨୪ । ଖରତର ହୋଇଣ ଗଉଡ଼ ଯାଏ ଚଳି । ଘର ଛାଡ଼ି ରାଧା ଗଲେ ବାଟବଣା ଭୁଲି । ୨୫ । ରାଧିକାଙ୍କୁ ବୋଲେ କିପାଁ ଘରକୁ ନ ଯାଉ । ଅନ୍ଧାର ରାତିରେ କାହିଁ ବାହାରରେ ଥାଉ । ୨୭ । ଅପୂର୍ବ ସୁନ୍ଦରୀ ତୁ ଗୋ ଗୋପରେ ଦୁର୍ଲ୍ଲଭ । ଦୃଷ୍ଟ ହିଁ ଦେଖିଲେ ଘୋଟିଭ କରିବେଟି ଲୋଭ । ୨୮ । ଶାଶୁ ଯେ ନଣନ୍ଦ ଘୋଡେ ନ ସହନ୍ତୁ ତାକେ । ଦୋଷରୁଣୀ ବୋଲି ବାଦ ଲଗାଇବେ ବଳେ । ୨୯ । ମୋହ ବୋଲି କରି ରାଧା ଘରକୁ ଲେଉଟି ଯାଅ । କବାଟ କିଳିଣ ତୋ ପଲଙ୍କେ ଶୋଇଥାଅ । ୩୦ । ବାହାର ମନେ ଏତେକ ଚିଆର କହିଲି । ଶ୍ରୀକୃଷ୍ଣ ଦୟା ଅନ୍ତରେ ଗୋଗୋଷ୍ଠେ ରହିଲି । ୩୧ । ରାଧିକା ଭିତରେ ଯେ ପଶିଲେ ତାହା ଶୁଣି । ବେନଯୁଡ଼ା କବାଟ କିଳିଲେ ଗୋପାଳୁଣୀ । ୩୨ । ଚଉପାଶେ ଜଳୁଛି ସୁବର୍ଣ୍ଣ ଦୀପାବଳୀ । ପଲଙ୍କ ଉପରେ ଯାଇ ପହୁଡ଼ିଲେ ବାଳୀ । ୩୩ । ଏଥି ସମୟରେ ନନ୍ଦ-ଯଶୋଦାଙ୍କ ବଳା । ସହି ନ ପାରିଲେ ଯେ ଅନଙ୍ଗ ମହାଜ୍ୱାଳା । ୩୪ । ରାଧିକା ମନ୍ଦିରେ ଯାଇଁ ହୋଇଲେ ଶ୍ରୀଗତ । ତେତେବେଳେ ହୋଇ ଅଛି ପାଞ୍ଚଦଣ୍ଡ ରାତ । ୩୫ । ଗଙ୍ଗଶିଉଳି କୁସୁମ ବେଢ଼ା କୁଞ୍ଚିତ କୁନ୍ତଳ । ହେ ଭଙ୍ଗୀ ମୂରତି ତାହା ଉପରେ ଦିବ୍ୟ ଚୂଳ । ୩୬ । ବଦନ ମୋହନବେଣୁ

ବାମକରେ ଧରି । କବାଟରେ ହସ୍ତ ଯେ ମାଇଲେ ନରହରି । ୩୭ । ଏମନ୍ତ ସମୟେ ତାହା ରାଧିକା ଯେ ଶୁଣି । ମନେ ମନେ ବିଚାର କରଇ ଗୋପାଙ୍ଗଣୀ । ୨୮ । ରାଧିକା ବୋଇଲେ କୃଷ୍ଣ ଅଇଲେ ବୁଝିଲି । କବାଟରେ ହାତ ମାରି ଡାକୁଛନ୍ତି ମୋତେ । ୩୯ । ତିଆରି ମ ଚନ୍ଦ୍ରସେଣୀ ଗଲି ମୋତେ ଛାଡ଼ି । କେମନ୍ତ କରିଣ ମୁଁ କବାଟ ଦେବି ଫେଡ଼ି ॥ ବାଟ ଥାଇଲେ ମୋ ନଣନ୍ଦ ପାପୀ ଘୋର । ଏହାକ୍ଷଣି ଗୋଳ ଯେ କରିବ ହାଟ ବାଟ । ୪୧ । ମରଣଠୁ ଲାଜ ଯେ ହୋଇବ ଗରୁ ବ୍ୟଥା । ଅପଣାଙ୍କୁ ଲୋକଙ୍କ ଲୋକରେ ଲଜ୍ଜା କଥା । ୪୨ । ଉପାୟ କରିଣ ମୁଁ ଯେ ବାହୁଡ଼ାଇ ଦେବି । ଭାଷାରେ ଭୁଲାଇ ତାଙ୍କୁ ବୁଝାଇ କହିବି । ୪୩ । ବଚନରେ ଜିଣି ମୋତେ ନ ପାରିବେ ହରି । ନ ଜାଣିଲା ପ୍ରାୟେକ କହିବି କଥା ଗୁରି । ୪୪ । ଏତେ ମତେ ପ୍ରଭୁ ଯେବେ କରିବେଟି ସ୍ନେହ । ନାସ୍ତ ହୋଇଲେ ପଛେ ଦେଲେ ଦେବି ଦେହ । ୪୫ । ଏପରି ବିଚାରି ରାଧା ଉଠିଣ ବସିଲେ । ତଳା ଯେ ଖଙ୍କାର ଦେଇ ମିଛରେ କାସିଲେ ॥ ମନେ ମନେ ବିଚାର କରନ୍ତି ହୃଷୀକେଶ । ହୋଏ ରାଧା ପଲଙ୍କୁ ଉଠିବା ପ୍ରକାଶ । ୪୬ । ଆମ୍ଭେ ଅଇଲୁ ବୋଲିଣ ଜାଣିଲେ ସେ ବାଳୀ । ମନେ ବିଚାରିବ ମୁଁ କରିବି ସୁଖେ କେଳି । ୪୮ । ଏତେ ବୋଲି ଜଗନ୍ନାଥ ମନର ଚ୍ଛାଟେ । ପୁଣିହଁ ଶ୍ରୀହସ୍ତ ନେଇ ମାଇଲେ କବାଟେ । ୪୯ । ରାଧିକା ବୋଇଲେ ରେ କାହିଁର ଚୋର ଭଲ । କେବଣ ଧାମରେ ମୋ କବାଟେ ହସ୍ତ ଦେଲ । ୫୦ । ଯମର ଘରକୁ ମୃତ୍ୟୁ ଆସିଅଛୁ ମାଗି । ନୁଆ କହୁଅଛ ମୋ ଭୁଆସ ଅଛୁ ଜଗି । ୫୧ । ଚୋର ବୋଲି ଗୋଳ କଲେ ନରୋଧିବ ବାଟେ । ଏହାକ୍ଷଣେ କାଟିଲେ ହୋଇବ ମୁଣ୍ଡକାଟେ । ୫୨ । ଶ୍ରୀକୃଷ୍ଣ ବୋଇଲେ ଗୋଳ ନ କର ସୁନ୍ଦରୀ । ମୁହିଁ ଯେ ମାଧବ ଅଛିଅଛୁ ବିଜେକରି । ୫୩ । ରାଧିକା ବୋଇଲେ ତୁ ହୋ ହୋଇଲୁ କାହିଁ । ବସନ୍ତ କୋକିଳକୁ ମାଧବ ବୋଲି କହି ॥ ଆମ୍ଭ ଧନ ତଇବ ବେଶାଖେ ଯେ ହୁଅନ୍ତି । ବସନ୍ତ କୋକିଳ ବନେ କେଳି କରୁଥାନ୍ତି । ୫୫ । ଆଜ ବନେ ବସନ୍ତ ଅଇଲା ଅବା କାହିଁ । କୋଇଲ ହୋଇଣ ତୁ

ମନୁଷ୍ୟଭାଷା କହୁ । ୫୬ । ଶ୍ରୀକୃଷ୍ଣ ବୋଇଲେ ରାଧା ନୁହଇ ଏମନ୍ତ । ଆମ୍ଭେ କିସ କହିଲୁଁ ତୁ ବୁଝିଲୁ କେମନ୍ତ । ୫୭ । ନୁହଇ ଯେ କୋକିଳ ମୁଁ କହୁଅଛୁ ତୋତେ । ଚନ୍ଦ୍ରଧର ବିଜେ କଲ ମଦନ ଆରତେ । ୫୮ । ରାଧିକା ବୋଇଲେ ତୁ ହୋ ହୋଇଲୁ କି ବାଇ । କୁରାଳମାନଙ୍କୁ ସିନା ରଙ୍ଗୀ ବୋଲି କହ । ୫୯ । ତୁ ଯେବେ କୁରାଳ ଜାତି ଅଟୁ ରେ ବର୍ବର । କିଶାକାଳେ କିପାଇଁ ଅଇଲୁ ମୋର ପୁର । ୬୦ । ଶ୍ରୀକୃଷ୍ଣ ବୋଇଲେ ରାଧା ନ କର ତୁ ଚିନ୍ତା । ନୁହଇ କୁରାଳ ମୁଁ ଯେ ଧରଣୀ ଧରନ୍ତା । ୬୧ । ରାଧିକା ବୋଇଲେ ତୁ ହୋ ହୋଇଲୁ କି ବାଇ । ଧରଣୀଧରନ୍ତା ବୋଲି ବାସୁକିଙ୍କୁ କହ । ୬୨ । ନବଖଣ୍ଡ ମେଦିନୀ ଯେ ପିଠିରେ ବହିଲା । ତେବେ ବଡ ରାଜା କିମ୍ପା ଏଠାକୁ ଅଇଲା । ୬୩ । ସେ ଯେବେ ନା ହିଡ଼ମ୍ବ କରନ୍ତା ଏତେବେଳେ । ନବଖଣ୍ଡ ମେଦିନୀ ପଡ଼ନ୍ତା ରସାତଳେ । ୬୪ । ତୁ ଯେବେ ଧରଣୀଧର ବାସୁକି ନାଗପୁ । ସାତଗୋଟା ଫଣା ତୋର କାହିଁ ଅଛି କହ । ୬୫ । ଶ୍ରୀକୃଷ୍ଣ ବୋଇଲେ ରାଧା ଶୁଣ ମୋ ବଚନ । ବାସୁକି ନୁହଇ ମୁଁ ଗୋ ସର୍ପଙ୍କ ରାଜନ । ୬୬ । ଆଦିଅନ୍ତ କଥା ତୁ ଗୋ ପଚାରୁ କାହିଁକି । ଖଗପତି ବିଜେ କଲ ତୋହର ତଦ୍ଦିଁକି । ୬୭ । ରାଧିକା ବୋଇଲେ ତୁ ହୋ ହୋଇଲୁ କି ବାଇ । ଖଗପତି ବୋଲିଣ ଯେ ଗରୁଡ଼ଙ୍କୁ କହ । ୬୮ । ପାଦଘାତେ ବସୁଧା କମ୍ପଇ ଥର ହର । ଡେଣା ବିସ୍ତାରିଲେ ଯେ କମ୍ପଇ ସ୍ୱର୍ଗପୁର । ୬୯ । ଯେବଣ ଗରୁଡ଼ ପାଦ ଡ଼ିଇ ସାତ ତାଳ । ଅଳପ ଉଡ଼ିଲେ କମ୍ପେ ଆକାଶ ମଣ୍ଡଳ । ୭୦ । ନବଲକ୍ଷ ଯୋଜନ ଅଟଇ ତାର ଅଣ୍ଟ । ସତୁରି ସସ୍ର ଯୋଜନ ତାର ପିଠି ମୋଟ । ୭ । ସବୁ ପକ୍ଷୀଙ୍କର ସେ ଅଟଇ ନୃପସାଇଁ । ବିନତାନନ୍ଦନ ଯେ ରମ୍ୟକ ଦ୍ୱୀପେ ଥାଇ । ୭୨ । ନାରାୟଣ ଚନ୍ଦନରେ ଥାଇ ଯୋଗବଳେ । ସେ କିପାଁ ବିଜୟ କଲା ଏତେ ନିଶାକାଳେ । ୭୩ । ଖଗପତି ବୋଲି ମୋତେ ଦଣ୍ଡି ଲୋଡ଼ ଅବା । ଗରୁଡ଼ ବୋଲିଣ ଯେ କେମନ୍ତେ ପ୍ରତେ ଯିବା । ୭୪ । ଶ୍ରୀକୃଷ୍ଣ ବୋଇଲେ ଶୁଣ ଅପୂର୍ବ ସୁନ୍ଦରି । ନୁହଇ ଗରୁଡ଼ ମୁଁ ପ୍ରତ୍ୟକ୍ଷେ ଅଟେ ହରି । ୭୫ । ରାଧିକା ବୋଇଲେ ତୁ ହୋ

ହୋଇଲୁ କି ବାର । ମର୍କଟମାନଙ୍କୁ ସିନା ହରି ବୋଲି କହ । ୭୬ ।
ଯେଉଁ କପିମାନଙ୍କୁ ଦନୁଜେ କଲେ ଶଙ୍କା । ଜାଣୁଥିବ ହନୁମନ୍ତ
ବିଧ୍ୱଂସିଲା ଲଙ୍କା । ୭୭ । ସାତସିନ୍ଧୁ ଡେଇଁଗଲା ସୀତାଅର୍ଥୀ ପାଇଁ ।
ସେ ବାନରମାନଙ୍କୁଟି ହରି ବୋଲି କହ । ୭୮ । କଥାରେ ଭୁଲଇ
ରାଧା ଭଙ୍ଗି ଲେଖ ଅଣ୍ଟ । ସ୍ତମ୍ଭୀଭୂତ ହୋଇଣ ରହିଲେ ନନ୍ଦସୁତ ॥
କହି କହି ମନରେ ଲାଗିଲା ଗରୁ ବ୍ୟଥା । ଜଡ଼ ପ୍ରାପ୍ତେ ରହିଲେ
ଯେ ନ ଫୁଟଇ କଥା । ୮୦ । ମନେ ମନେ ବିଚାର କରନ୍ତି ଚକ୍ରପାଣି ।
ସ୍ତ୍ରୀ ଖି ଗୋଠା ଗୁରୁକୁ ମୁଁ ନ ପାରିଲି ଜାଣି । ୮୧ । କେମନ୍ତ ଏହାଙ୍କୁ
ମୁହିଁ କରିବଇଁ ବୋଧ । କହୁଁ କହୁଁ ରଜନୀ ହୋଇଲା ଅସି
ଅର୍ଦ୍ଧ । ୮୨ । ପୁଣି ବିଚାରନ୍ତି ଯୁବତୀର ଏଡ଼େ ମାୟା । ବିନୟୀ
ହୋଇଲେ ଅବା କରିପାରେ ଦୟା । ୮୩ । ଏତେ ବୋଲି ଜଗନ୍ନାଥ
ମନେ ଚିନ୍ତା କରି । ରାଧିକାଙ୍କୁ ବୋଇଲେ ଗୋ ଶୁଣ ଦିବ୍ୟ ନାରୀ ॥
ଅନେକ ପ୍ରକାରେ ଆଶ କରିଅଛୁ ତୋତେ । ବେନିକର ଯୋଡ଼ି ଅଛୁ
ଦୟାକର ମୋତେ । ୮୪ । ମଦନ ଆରତେ ମୁଁ ହୋଇଲି ନରିମାଷି ।
ଚରଣ ଧରୁଛି ତୋର ଶୁଣ ପ୍ରାଣ ସଖି । ୮୬ । ତୁ ଯେବେ କଟାକ୍ଷ
ଫେଡ଼ି ନ ଦେବୁ ନୟତ । ନଷ୍ଟ ହୁ ଜୀବନ ଗଲା କହୁଅଛୁ ସତ । ୮୭ ।
ମଦନ ଆରତେ ପ୍ରଭୁ କ୍ରୋଧଭର ହୋଇ । ଦେନି ନୟନରୁ
ନୀର ଯାଉଅଛୁ ବହି । ୮୮ । ଏହା ଶୁଣି ରାଧିକା ଯେ ପଲଙ୍କୁ
ଉଠିଲେ । କାଳିଲା କଟାକ୍ଷ ଖଞ୍ଜା ବେଗେ ଫେଡ଼ି ଦେଲେ । ୮୯ ।
ତାହା ଦେଖି ହରଷ ହୋଇଲେ ଯଦୁପତି । ଦରିଦ୍ର ପାଇଲା ଯେସନେ
କୁବେର ସମ୍ପତ୍ତି । ୯୦ । ମାୟା ମୋହ ସଂସାରକୁ ବାଟ ଗଲା ପିଠି ।
ଜନ୍ମ ଅନ୍ଧ ପାଇଲାକି ଲୋଚନ ଦିଓଟି । ୯୧ । ପଲଙ୍କ ଉପରେ ପ୍ରଭୁ
ବିଜେ କଲେ ଯାଇଁ । ଠହ ଠହ ହସନ୍ତି ରାଧିକା ମୁଖ ଚାହିଁ । ୯୨ ।
ଆଲିଙ୍ଗନ କରିଣ ବୋଲନ୍ତି ପଦ୍ମଆଖି । ମୋତେ କାହିଁ ଏତେ ଦୁଃଖ
ଦେଲୁ ଚନ୍ଦ୍ରମୁଖି । ୯୩ । ରାଧିକା ବୋଇଲେ ତୁମ୍ଭେ ଜାଣିଥିବ
ହରି । ଶାଶୁ ଯେ ନଣନ୍ଦଙ୍କୁ ମୁଁ ନିରନ୍ତରେ ଡରି । ୯୪ । ତୁମ୍ଭ
ଅଭେଦ କଥାରେ ନାହିଁ ମୋର ଭେଦ । ଦୋଷଗୁଣୀ ବୋଲି

ମୋତେ ଦେଉଛନ୍ତି ବାଦ । ୯୫ । ଗଞ୍ଜଣା ରେନ ଶୁଣି କମ୍ପୁଥାଇ
କାୟ । ଏକା ଅପବାଦକୁ ମୁଁ କରୁଥାଇ ଭୟ । ୯୬ । ଶ୍ରୀକୃଷ୍ଣ
ବୋଇଲେ ଶୁଣ ଟୋ ଶୁଣ ପ୍ରାଣସଖି । ମୁହିଁ ଥିଲେ ରାଧା ତୋତେ
କିଛି ଭୟ ନାହିଁ । ୯୭ । ରାଧିକା ବୋଇଲେ ତୁମ୍ଭେ ଶୁଣ ନନ୍ଦଶିଷ ।
ଏକା ଜଣକରେ ତୁମ୍ଭେ କରିବଟି କିସ । ୯୮ । ଏକା ଜଣକରେ
ପ୍ରଭୁ ନ ଚଳଇ ଦାଣ୍ଡି । ଏକା ସୁଭକରେ କି ଚଳିଲ ହୁଏ କାଣ୍ଡି ॥
ଏକା ପତ୍ରଣ୍ଡିକେ କି ବୃକ୍ଷକୁ ହୋଏ ଯାଇ । ଏକା ନାବିକରେ
କି ସମୁଦ୍ର ପାର ହୋଇ । ୧୦୦ । ଶ୍ରୀକୃଷ୍ଣ ବୋଇଲେ ରାଧା ନ
କର ଗୋ ଭ୍ରାନ୍ତ । କ୍ଷଣକେ ହୋଇବୁ ଅମ୍ଭେ ଅନନ୍ତ ମୂରତି । ୧୦୧ ।
ଏଥିପାଇଁ ମନେ ତୁ ଗୋ ନ କର ଶୋଚନା । ଆଗ ମୋତେ
ଅନଙ୍ଗ ବାଣରୁ ରଖ ଜନା । ୧୦୨ । ଏତେ ବୋଲି ରାଧିକାଙ୍କୁ
ଦେନ ଭଗବାନ । କୋଳରେ ବସାଇ ମୁଖେ ଦିଅନ୍ତି ଚୁମ୍ବନ । ୧୦୩ ।
ରତିଷଠି ବନ୍ଧେ ହୋଇଲ ଦିବ୍ୟ ପ୍ରୀତି । ପାଦେ ଛନ୍ଦାଛନ୍ଦି ଭୁଜେ
ଭିଡାଭିଡ଼ ହୋନ୍ତି । ୧୦୪ । ଫିଟିଲ ବସନମାନ ହେଲ ଅସମ୍ଭାଳ
ପରିଶ୍ରମ ପାଇଣ ବହିଲ ଅଙ୍ଗୁଝାଳ । ୧୦୫ । ରାଧିକା ସଙ୍ଗରେ
ପ୍ରଭୁ ପ୍ରୀତ ରସେ ମିଶି । ମୈଥୁନ୍ତି ଭେଦଦଣ୍ଡ ହୋଇଲକ ନିଶି ।
ନାନା ପରିବନ୍ଧ ଭଙ୍ଗି କଲେ ଦେବରାଜ । ତେବେ ଯାଇଁ ଶ୍ରୀଅଙ୍ଗୁ
ଝଡ଼ିଲା ବ୍ରହ୍ମବୀର୍ଯ୍ୟ । ୧୦୬ । ସୁପ୍ରୀତରେ ଅତି ସୁଖ ପାଇ ଦେବହରି ।
ସେହି ପଲଙ୍କରେ ନିଦ୍ରା ଗଲେ ଦରିଭାରି । ୧୦୮ । ଶଶିମୁଖୀ
ରାଧିକାକୁ କୋଳରେ ପୁରାଇ । ଯୋଗ ନିଦ୍ରା ଗଲେ ପ୍ରଭୁ ଅଚେତନ
ହୋଇ । ୧୦୯ । ବେଭାରେ ରଜନୀ ଆଉ ଥିଲା ଦୁଇ ଘଡି ।
କୁଆଁ ତଳ ଉଠିଲା କୁକ୍କୁଟ ଦେଲା ରଡି । ୧୧୦ । ରାଧିକାଙ୍କ ଘେନି
ନିଦ୍ରା ଗଲେ ମହାବାହୁ । ରଜନୀ ପାହିଲା ବୋଲି ନ ଜାଣନ୍ତି ଆଉ ॥
ଏଥୁଅନନ୍ତରେ ତହୁଁ ଚନ୍ଦ୍ରସେଣା ମୃତ । ଦୁଧଭାର ଘେନି
ଗୋଷ୍ଠୁ ଅଇଲା ଗଡ଼ିତ । ୧୧୨ । ଅଡଙ୍ଗୀ ଚଳୁଅଛି ମତ୍ତଗଜ
ଜିଣି । ମୁଣ୍ଡରେ ଖୋସଛି ଖୋସା ପୀତର କାଞ୍ଚଣୀ । ୧୧୩ ।
ଫର ଫର ଲଙ୍କି ତାର ଉଡ଼ଇ ପବନରେ । ଟଙ୍ଗମାରି ବୋଲିଅଛି

କାଛେଣୀ ଉପରେ । ୧୧୪ । ଖୋସା ଚଉତନା ଯେ ଶିରରେ
ଅଛି ବେଣି । ରୁଣୁ ଝୁଣୁ ବାଜଇ କଟିରେ ଦିବ୍ୟ ଘଣ୍ଟି । ୧୧୫ ।
ମନେ ବିଚାରିଲା ମୋ ଭାରିଯା ନାରିପ୍ରିତ । ତୁଛା ଘରେ ଏକା
ହୋଇ ଶୋଇଥାଏ ନିତ । ୧୧୬ । ଭୂତ କି ଡାକିନୀ ଦିନେ ନିଶ୍ଚୟ
ଖାଇବ । ଏମନ୍ତ ପ୍ରକାରେ ମୋର ସମ୍ପତ୍ତି ସରିବ । ୧୧୭ । ଏତେ
ବୋଲି ଚନ୍ଦ୍ରସେଣା ଆସୁଅଛି ଧାଇଁ । ଅଙ୍ଗଶସ୍ତ ହୋଇ ଝାଳ ଯାଉ
ଅଛି ବହି । ୧୧୮ । ଦାଣ୍ଡ ଦ୍ୱାରେ ଡେଇଁ ଯାଇଁ ପଶିଲା ଭିତର ।
ମଝି ଅଗଣାରେ ନେଇ ଓହ୍ଲାଇଲା ଭାର । ୧୧୯ । ମସ୍ତକରୁ
ଖୋଲି ଖୋସା ଚଉତନା କାଢ଼ି । ସ୍ଥିରକରି ତଳରେ ଥୋଇଲା
କେନ୍ଦୁବାଢ଼ି । ୧୨୦ । ଦଉଡ଼ିର ପରିଶ୍ରମେ ନିଃଶ୍ୱାସ ଛାଡ଼ଇ । ପିଣ୍ଡାରେ
ବସିଲା ଯାଇଁ ଦେହ ସୁଖ ପାଇ । ୧୨୧ । ବାଟ କଥା ବିଚାରି
ମନରେ ଅଛି ଦକ । ରାଧା ରାଧା ବୋଲି ଦେଲା ଗୋଟା କେତେ
ଡାକ । ୧୨୨ । ଅଚେତନେ ନିଦ୍ରା ଯାଉଥିଲେ ଗୋପାଳୁଣୀ । ଧାଇ-
କାରେ ଉଠିଲେ ଗଉଡ଼ ଡାକ ଶୁଣି । ୧୨୩ । ନୟନ ମଳିଣ ରାଧା
ଚାହିଁଲେକ ଚଉଦଣ୍ଡେ । ରଜନୀ ପାହିଣ ବେଳ ହୋଇଲାଣି ଦଣ୍ଡେ ॥
ଏହା ଦେଖି ଗୋପାଳୁଣୀ ତରସ୍ତ ହୋଇଲେ । ହସ୍ତ ଧରି
ସାରଙ୍ଗପାଣିଙ୍କି ଉଠାଇଲେ । ୧୨୫ । ଅଚେତନ ହୋଇ ପ୍ରଭୁ ନିଦ୍ରା
ଯାଉଥିଲେ । ରାଧିକା ଡୋଳିବା ଜାଣି ଉଠିଣ ବହିଲେ । ୧୨୬ ।
ରାଧିକା ବୋଇଲେ ତୁମ୍ଭେ ଶୁଣ ନନ୍ଦସୁତ ।। ଗଉଡ଼ ଆଇଲା ହେବ
ଏ କଥା ପ୍ରଘଟ । ୧୨୭ । କି ବୁଦ୍ଧି କରିବ କହ ଯଶୋଦାଙ୍କ ବଳା ।
ଶୁଖିଲା ନଦୀରେ ମୋର ବୁଡ଼ାଇଲ ଭେଳା । ୧୨୮ । କି ବୁଦ୍ଧି କରିବ
ମୋତେ କହ ବ୍ରଜ୍ଜରାଗି । ଯେଉଁ କଥାକୁ ଡରଇ ତାହା ହେଲା
ଆସି । ୧୨୯ । କଳିଲ କବାଟ ଖଞ୍ଜା ଫେଡ଼ ଦେବ ଯାଇଁ । ତୁମ୍ଭଙ୍କୁ
ଦେଖିଲେ ମୋତେ ବଞ୍ଚାଇବ ନାହିଁ । ୧୩୦ । ଶ୍ରୀକୃଷ୍ଣ ବୋଇଲେ
ସଖୀ ଆଗେତ ଗୋ ନୁହ । କି ବୋଲଇ ଚନ୍ଦ୍ରସେଣା ଦଣ୍ଡେ ତୁନିହୁଅ ॥
ଏ ଛାର କଥାକୁ ସଖି ନ ଡର ଗୋ ତୁମ୍ଭେ । କି ବୋଲଇ
ଚନ୍ଦ୍ରସେଣା ଶୁଣୁ କି ନା ଆମ୍ଭେ । ୧୩୨ । ରାଧିକା ବୋଲଇ ପ୍ରଭୁ

ହୋଇଲି କି ବାଇ । ତୁମ୍ଭେ କି ଶୁଣିବ ମୋ ଶରୀରେ ଜ୍ଞାନ ନାହିଁ । ୧୩୩ । କି ବୁଦ୍ଧି କରିବ ମୋତେ କହ ସହାବାହୁ । ଶରଦ ପୂର୍ଣ୍ଣିମା ଚନ୍ଦ୍ର ଗ୍ରାସିଲାକ ରାହୁ । ୧୩୪ । ପଳାଇ ଯିବା ପାଇଁକି କେଉଁଣେ ନାହିଁ ବାଟ । କି କରିବ ମୋତେ ଆସି ପଡ଼ିଲା ଶଙ୍କଟ ।୧୩୫। ଦାଣ୍ଡେ ବାଟେ ଲୋକେ କେତେ ଚୁଣ୍ଡ ହୋଇଲେଣି । ରାତ୍ର ପାହି ଦିନ ଆସି ଘଡ଼ିଏ ହେଲାଣି । ୧୩୬ । ଏହା ଶୁଣି ବଇନ ବୋଲନ୍ତି ନନ୍ଦବନ୍ଧି । ଆରତ ହୋଇଲେ କାର୍ଯ୍ୟ ନ ହୁଅଇଟି କିଛି । ୧୩୭ । ଆମ୍ଭ ବୋଲକରି ତୁ ଟୋ ଶୋଇଥାଅ ମିଛେ । ଉପାୟ କରିଣ ବୁଦ୍ଧି ଭିଆଇବା ପଛେ ।୧୩୮।ଏହା ଶୁଣି ରାଧିକା ରହିଲେ ତୁନ ହୋଇ । ଶ୍ରୀକୃଷ୍ଣ ବସିଲେ ଯେ ପଲ୍ୟଙ୍କ ପରେ ଯାଇଁ । ୧୩୯ । ବାହାରେଣ ଗଉଡ଼ ଯେ ଡାକଇ ବୋବାଳି । କେତେବେଳ ଯାଏ ନିଦ୍ରା ଯାଉ ଗୋପବାଳୀ । ୧୪୦ । ବେଭରେଣ ବେଳ ଆସି ଘଡ଼ିଏ ହୋଇଲା । ଏତେବେଳଯାଏ ତୋର ନିଦ୍ରା ନ ଭାଙ୍ଗିଲା । ୧୪୧ । ମୁହିଁ ତୋର ନିଜ କାନ୍ତ ଡାକଇ କୁହାଟି । ବୁଧଲୀର ଯେନ ମୁହିଁ ଦଉଅଛି ଝୁଣ୍ଟି ॥ ଏତେ ବୋଲି ଗଉଡ଼ କମ୍ପଇ ଥର ହର । ଉଠି ଯାଇ କବାଟେ ମାଇଲା ବେନିକର । ୧୪୩ । ମରି ପଡ଼ ପେଲଇ ଯେ ଆଣ୍ଠୁ ଭରି ଦେଇ । ବିଷମ କବାଟ ଖଞ୍ଜା ଫିଟିବାକୁ ନାହିଁ । ୧୪୪ । ମନେ ବିଚାରଇ ମୋ ଭାରିଯା ନବଯୁବା । କାହାକୁ ଯେନିଣ ଘରେ ଶୋଇଅଛି ଅବା । ୧୪୫ । ଏତେ ବୋଲି ବେନିହସ୍ତ ଲଗାଇ କବାଟେ । ଝିଙ୍କ କରି ଟେକି ଦେଲା କିଳିଜଲା ବାଟେ । ୧୪୬ । ରାଧିକାଙ୍କୁ କୋଳେ ଯେନ ପ୍ରଭୁ ଦେବରାଜେ । ପଲ୍ୟଙ୍କ ଉପରେ ସୁଖେ କରିଛନ୍ତି ବିଜେ । ୧୪୭ । ମୁଖଚନ୍ଦ୍ର ପ୍ରକାଶଇ ଶ୍ୱେତପଦ୍ମ ଜ୍ୟୋତି । କୋଟିଏ କନ୍ଦର୍ପ ରୂପ ତ୍ରିଭଙ୍ଗୀ ମୂରତି ॥ ନବଘନ ଶ୍ୟାମଳ କନ୍ଧିତ ମହାତନୁ । ଚରଣେ ନୂପୁର କି ବିରାଜେ ବାଳଭାନୁ । ୧୪୯ । ରାଧା ଯେ ମାଧବ ଦୁହେଁ କରିଛନ୍ତି ବିଜେ । ନାରାୟଣ କୋଳରେ କମଳା ଯେସନେ ସାଜେ । ୧୫୦ । ତାହା ଦେଖି ଚନ୍ଦ୍ରସେଣା ବହିଲା ପାଲଟି । ପୁଣ ପୁଣ କରି ଦ୍ରୁତ ସେହୁ ଚାହିଁଇ ତରାଟି ॥

ଯେତେବେଳେ ଏପରି ଦେଖିଲୁ ବେନି ତୋଳା । ବୋଇଲୁ ରାଧିକା
ନଷ୍ଟେ ବୁଡାଇଲୁ ଭେଳା । ୧୫୨ । କୁଳରେ କଳଙ୍କ ମୋର
ଲଗାଇଲୁ ଆସି । ପରପୁରୁଷ ନୃ ଯେନ୍ନି ଘରେ ଅଛୁ ପଶି । ୧୫୩ ।
ଏଣୁପରି ସବୁଦିନେ ଘରେ ଥାଉ ଶୋଇ । ବେଭାରେ ଗଢ଼ିଉ ମୁଁ ଯେ
ଗୋଗଷ୍ଟକୁ ଯାଇ ।୧୫୪। ଆଖି ଆଗରେ ଆଜ ପଶୁଅଛୁ ଭେଟ ।
କାହିଁ ଛାଡିବ ମୁଁ ତୋତେ ନ ମାରିଣ ଗୁଣ୍ଠ ।୧୫୫। ଶଙ୍ଖାମୂଳ କରିଣ
କବାଟ ଅଛୁ କିଳି । ବୁଦ୍ଧିଁକି ବାନ୍ଧିଣ ମୁଁ ଯେ ଦେବି ବଷ.ବଳୀ ॥
ତୋହର ଯୋଗରେ ମୋତେ ହୋଇବ କି ଲାଜ । ଦଇବ ଭେଟାଇ
ଅଛି କାହିଁ ଯିବୁ ଆଜ । ୧୫୭ । ନବର୍ତ୍ତ ହୋଇଣ ଦ୍ୱାର ବସିଥିବ
ମାଢ । ଅପୃତ୍ରରେ ପଡିଲେ ପିଠିବି କେନ୍ଦୁବାଡି । ୧୫୮ । କେବଣ
ବିଧାତା ଆସି କଲା ଏଥି ଭେଟ । ଏବେ ମୁଁ ଜାଣିଲି ମୋ ବଂଶର
ପୁଣ୍ୟ ବାଟ । ୧୫୯। ସିଂହର ଆଗରେ ଆସି ପଶୁଅଛୁ ଶଶା । ମାର୍ଜାରର
ଆଗରୁ କାହିଁ ବରତିବ ମୂଷା । ୧୬୦ । ବକେ ଯେ ଶ୍ୟାମଳ ପକ୍ଷୀ
ଦେଉଥାଇ ଝାଂଢ । ପାରିକୁ ଦେଖିଲେ କି ସେ ଭଲେ ଏବ ଛାଡି ।
ନିଶ୍ଚୟ ମାରିବି କଥା ତିନପୁରେ ଥିବ । କାଳସର୍ପ ମୁଖରୁ ମଣ୍ଡୁକି କାହିଁ
ଯିବ । ୧୬୨ । ଏଡ଼େ ବଡ କଳଙ୍କ ମୁଁ ନ ପାରଇ ସହି । ଗରୁଡ଼
ହାବୁଡେ ଆଜି ପଡିଅଛୁ ଅହି । ୧୬୩ । ମୁହିଁ ଥାଉଁ ଥାଉଁ ରାଧା
ହୋଇଲୁ ଦୋଗୁଣୀ । ମାଉଁସ କାଟିବି ତୋର ଗୁଳା ପ୍ରାୟେ କରି ॥
କେବଣ ପାମର ଆଜ ପଶିଅଛୁ ଘରେ । ତୋତେ ଯେନି ଶୋଇଅଛୁ
ପଲଙ୍କ ଉପରେ ।୧୬୪। ନାନା ଶାସ୍ତି ଦେଇ ତାକୁ କରିବଇଁ ନାଶ ।
ହସ୍ତରେ ପଡିଲେ ସିନା ସାରିବଇଁ ରୋଷ । ୧୬୫ । ଆଣ୍ଠୁ ଗଣ୍ଠି
ଲଗାଇଣ ବାନ୍ଧିଣ ଥୋଇବି । ବୁନ କାନି ଦେଇଣ ଢେଙ୍ଗୁରି
ଦିଆଇବି । ୧୬୬ । ସତେ କି ଦଇବ ଏତେ କରାଇବ ମାନ । ମୁଣ୍ଡ
ତୋର ଛିଣ୍ଡାଇବି କେନ୍ଦୁବାଡି ଘେନି । ୧୬୮ । ନୂଆ ଦଣ୍ଡୁ ଥାସି
ମୋ ବିଷମ କାଟୁଥାଇ । ନଗ୍ରର ବାହାରେ ନେଇ ଦିଆଇବ ଶୂଳ ॥
କେନ୍ଦୁବାଡି ଝମ୍କାଇ ପିଠିର ଭୂମିରେ । ତାହା ଦେଖି ରାଧିକା
କମ୍ପଇ ଥରହରେ । ୧୭୦ । ମହାଭୟ ପାଇଣ ଡବୋଲଇ ନବବାଲୀ ।

ଙ୍କ ବୃଦ୍ଧି କରିବ ଏବେ କହ ବନମାଳୀ । ୧୭୧ । ଦଇବ ଦଣ୍ଡିଲା ଏତେବ ଶୁଣ ନନ୍ଦସୂତ । ନଷ୍ଟପ୍ରୟ ହୋଇଲା ଏବେ ମଞ୍ଚଶିର ବାଟ ।୧୭୨। ଶ୍ରୀକୃଷ୍ଣ ବୋଇଲେ ରାଧା ନ ଭାଳ ଟୋ କିଛି । ଏଥିକି ମୋହର ସଖି ଉପାୟେକ ଅଛି ॥ ଏ ମୋହର ବଚନ ତୁ ଶୁଣ ଗୋ ନସ୍ମୃତ । ଏହିକ୍ଷଣି ଆମ୍ଭେ ଯେ ହୋଇବୁ କଳାଭୂତ ॥ ବିକ୍ଷରୂପ ଧରିବୁ ଗୋ ଏ ତୋହର ଘରେ । ମୋତେ ଦେଖି ଚନ୍ଦ୍ରସେଣା ପଳାଇବ ଡ଼ରେ ।୧୭୩।ତୋହ ସୁକ୍ଷେ ରାଧିକା ପଲଙ୍କେ ଶୋଇଥିବୁ । ଆମ୍ଭ ଭୂତ ହୋଇବୁ ତୁ ପ୍ରତ୍ୟକ୍ଷେ ଦେଖିବୁ । ୧୭୬ । ରାଧିକା ବୋଇଲା ଯେ ଅବୋଧ ନାଥ ମୁହିଁ । ଏକା ହୋଇ ପଲଙ୍କେ କେମନ୍ତେ ଥିବି ଶୋଇ । ୧୭୭ । ଯେତେବେଳେ ଭୂତ ତୁମ୍ଭେ ହୋଇବ ଅଦ୍ଭୁତ । ମହାଭୟ ପାଇ ମୁଁ ଯେ ମରିବ ନସ୍ମୃତ । ୧୭ । ଏହା ଶୁଣି ରାଧିକାଙ୍କୁ ବୋଲୁଛନ୍ତି କହ୍ନା । ସହି ନ ପାରିଲେ ପଛେ ମରିବୁ ତୁ ସିନା ॥ ରାଧିକା ବୋଇଲେ ତୁମ୍ଭେ ଶୁଣ ଚକ୍ରଧର । ଦେଖିଲେ ମରିବି ପ୍ରଭୁ ଏମନ୍ତ ନ କର ॥ ଶ୍ରୀକୃଷ୍ଣ ବୋଇଲେ ଯେବେ ଭୟକଲୁ ଚିତ୍ତେ । ଆମ୍ଭ ବାହୁ ଛୁଇଁବାତଳେ ଲୁଚିଇବ ତୋତେ ॥ ଏତେ ବୋଲି କାୟା ବିସ୍ତାରିଲେ ଚକ୍ରଧର । ବେନିଭୁଜ ତୋଳି ଦେଲେ ଭକତସୋଦର ॥ ଶରଦ ଚନ୍ଦ୍ରବଦନୀ ରାଧିକାଙ୍କୁ ନେଇ । ଭୁଜ ତଳେ ଲୁଚାଇଲେ ବ୍ରହ୍ମାଣ୍ଡଗୋସାଇଁ ॥ ପରୀକ୍ଷିତ ଆଗେ ବ୍ୟାସ ନନ୍ଦନ କହିଲେ । ଅନୟ୍ପଞ୍ଜର ତଳେ ରାଧିକା ରହିଲେ ॥ ସେହିକ୍ଷଣି କାୟା ବିସ୍ତାରିଲେ ଚକ୍ରଧର । ଶୋଇଲା ପଲଙ୍କ ଯେ ଲୁଚିଲା ପାଦତଳ ॥ ଚରମ ଟାଙ୍କୋଣିଇ ବିସ୍ତାରିଲେ ମହାକାୟା । ବ୍ରହ୍ମା ଶଙ୍କରଙ୍କ ଅଗୋଚର ଯାର ମାୟା ॥ ବିକଟାଳରୂପ ଧରିଛନ୍ତି ଚକ୍ରଧର । ମୁଣ୍ଡ ଲାଗୁଅଛି ଯାଇଁ ତୁଳର ଉପର ॥ ଝୋଁପ କରି ଚନ୍ଦ୍ରସେଣା କରୁଅଛି ତମ । କବାଟର ବେଲକୁ ଯେ ଯୋଡିଲକ ଯମ ॥ କେନ୍ଦୁ ବାଡ଼ ଝମ୍ପକ ଇ ରାଧାଙ୍କୁ ଡ଼ାକଇ । କାହାକୁ ଦେଖିଣ ଲୋ ପଲଙ୍କେ ଅଛୁ ଶୋଇ ସ୍ତିରି ଅଲକ୍ଷଣୀ ଲୋ ପାମରି ହୀନ-ଜାତି । ସାନ ଗୋଟି ଧନ୍ ଲୋ ହୋଇଲୁ ବିଳୁଆତି ॥ ଜଗିଥିବ ହୃଦୟରେ ପଡ଼ିବା ପର୍ଯ୍ୟନ୍ତେ । ବୁଢ଼ାଙ୍କର ମାଉଁସ ଲୋ ଖାଇବି

ଦାନ୍ତେ ॥ ଏତେ ବୋଲି ଚନ୍ଦ୍ରସେଣା ହସ୍ତ ଘେନି ବାଉ । ଆକୋଣି ବସିଲ ଯେ କବାଟଦ୍ୱାର ମାଉ ॥ ମନେ ମନେ ଭାବ ପୁଣି କରଇ ବିଚାର । କାହାର ନନ୍ଦନ ଦେଖି ଚକ୍ଷି ଥିବା ଚୋର ॥ ଗୋଡ଼ରେ ଶାଙ୍କୋଳି ଦେଇ ବାନ୍ଧି ଘେନି ଯିବ । ଜାତ ଅର୍ଥ ସମସ୍ତ ରାଧାକୁ ଦିଆଇବ ॥ ବିଚାରୁ ବୋଇଲ ଦେଖି ଅନାଇଣ ଦେବା । କେମନ୍ତ ପ୍ରକାରେ ହୁଦେ ଶୋଇଛନ୍ତି ଅବା । ୧୯୫ । ଅବୋଧ ବାମାଙ୍କୁ ମୁଁ ଯେ ଦେଲ ଉଦ୍ରବଉ । ଜାଠକା ମୋହଣ ଅବା ପ୍ରାଣ ଯିବ ଗୁଉ । ୧୯୬ । ଏତେ ବୋଲି ଗଦ୍ଗଦ୍ଣ୍ଟୀ ନିରେଖେ ଦେଲା ଗୃହେଁ । ଦେଖିଲାବେଳକୁ ସେଠାବରେ କେହୁ ନାହିଁ । ୧୯୭ । ଲଲାଟପଟରେ ଅଛି ଚନ୍ଦନ ଟୋପାଏ । ବିପଣ୍ଡକାଳିଆ ହୋଇ ବହିଛି ଗୋଟାଏ ॥ ବିକଟାଳ ରୂପ ତାର କେ କହିବ ପୁଣି । ଦେହ ଦିଶୁଅଛି ଯେ ଆଷାଢ଼ ମେଘ ଜିଣି । ୧୯୯ । ଷଣ୍ଟକେ ବସଇ ଯେ ଷଣକେ ହୁଏ ଛିଡ଼ା । ତାଳଚଛ ପ୍ରାୟେକ ଦିଶଇ କାଶପୋଡ଼ା । ୨୦୦ । କର୍ଣ୍ଣମୂଳେ ପିନ୍ଧିଅଛି କୁଣ୍ଡଳରୁ ଯୋଡ଼ା । ଚକା ଆଖି ଦୁହିଁକି କରଇ ଘୋଡ଼ା ଦୋଡ଼ା । ୨୦୧ । ରୋମ ଟାଙ୍କୋରାଇ ଦେହ ଫୁଲାଉ ଦେଉଛି କାଳସର୍ପ ପ୍ରାୟେ ତାର ଟର୍କନ ଶୁଭୁଛି ॥ କୋଠିଏ ଯମର ତେଜ ମୁଖ ତା ବିକାଶି । ଆଁ ଆଁ କଲେ ତୁଣ୍ଡରେ ପର୍ବତ ଯିବ ପଶି । ୨୦୩ । ଚଠ ମଠ ଦନ୍ତପାନ୍ତି ମହାଭୟଙ୍କର । ଲହ ଲହ ଜିହ୍ୱା ଯେ କାଢ଼ଇ ହାତ ବାର ॥ ତାହା ଦେଖି ଚନ୍ଦ୍ରସେଣା ହୋଇଲା ବିମୁଖ । ମନେ ମନେ କହୁଅଛି ଧର୍ମ ମୋତେ ରଖ ॥ ପୁନ ପୁଣ ବିଚାର କରଇ ହୃଦଗତେ । ଗୋଟାଏ ଭୂତ ପରାୟେ ଦିଶୁଅଛି ମୋତେ ॥ କଦ୍ଧାଟ ଦ୍ୱାରେଣ ଯେବେ ମୁହିଁ ଥିବ ବସି । ବାଳଧର ଘେନାଗଲେ କେ ରଖିବ ଆସି ॥ ଘୋର ଦୈତ୍ୟଙ୍କର ଯେ ପ୍ରଚଣ୍ଡ ମହାବଳୀ । ଏହିଷଣି ମୋତେ ଦେଖି ନ ଦିଅଇ ଗିଳି ॥ ମଣ୍ଡୂକ ପ୍ରାୟେ ମୁଁ ଯେ କରିଥିଲି ଦର୍ପ । ଏବେ ମୋତେ ଆସି ଯେ ହୋଇଲା କାଳସର୍ପ ॥ ବକ ପ୍ରାୟେ ହୋଇ ମୁଁ ଯେ ବସିଥିଲି କାଛି ॥ ବିଚାରିଲା ବେଳକୁତ ଶ୍ୟାମଳ ହୋଇଛି ॥ ମୂଷା ପ୍ରାୟେ ମନ୍ଦି ମୁଁ ଯେ କରିଥିଲି ଗିଡ । ନନ୍ଦନ

ଜାଣିଲି ଏବେ ବିଷମ ବିପତ୍ତି ॥ ମାର୍ଜାର ଦାନ୍ତରେ ଆସି ପଡ଼ିଅଛି ମୂଷା । ସିଂହର ଛାମୁରୁ କାହିଁ ତରିବବ ଶଶା ॥ ଏତେ ବୋଲି ଲେଉଟି ଚହିଁଲ ମୁହଁମଣ୍ଡ । ଅରୁଣ ପ୍ରାୟେକ ଯେ ଦିଶିଲା ରଙ୍ଗ ଜ୍ୟୋତି ଗର୍ଜ୍ଜି ବୋଇଲା କଷ୍ଟେ ଅଟେ ଏହୁ ଭୂତ । ସିଧାକୁ ଖାଇଣ ମୁଖେ ଲାଗିଛି ରକତ ॥ କ୍ଷଣକ୍ଷଣକରେ କାୟା ବଢ଼ାଉଛି ଯେତେ । ପ୍ରାଣ



ଚନ୍ଦ୍ରସେଣା ଓ ଭୂତ ।

ଧେନୁଗଲା ପ୍ରାୟେ ଲାଗୁଅଛୁ ମୋ ଚିତ୍ତ ॥ ନପୂନ ଉଠି ମୋତେ ଦେଉ-
ଅଛି ଦୁଃଖ । ଯମର ଦାଢ଼ରୁ ଅବା ପଳାଇବ କାହିଁ । ଚନ୍ଦ୍ରସେଣାକୁ
ବାହାରେ ଦେଖି ଜଗନ୍ନାଥ । କବାଟ ଜଗାରେ ଯାଇ ବଢ଼ାଇଲେ
ହସ୍ତ ॥ ସର୍ବକାସ୍ତ ଶ୍ରୀମରୂପ ଗରୁଡ଼ଙ୍କୁ ଚାହିଁ । ହସିଣ ଉଠିଲେ
ପ୍ରଭୁ ଚହଚହ ହୋଇ ॥ ତାହା ଦେଖି ଚନ୍ଦ୍ରସେଣା ଥରହର ହେଲା ।
ମଝିଅଗଣାରେ ଯାଇ ଚମକି ପଡ଼ିଲା ॥ ହସ୍ତରେ ଯେତେଣ ଥିଲା ଯେଉଁ
କେନ୍ଦୁବାଡ଼ି । କବାଟ ଦ୍ୱାରରେ ତାହା ପଳାଇଲା ଛାଡ଼ି ॥ ମୁହଁ ମାଡ଼ି
ପଡ଼ିଣ ମୁଁ ଅଛି ଦକଦକ । ଗରୁଡ଼ଙ୍କୁ ଚାହିଁଲା କେହି ନାହିଁ ଲୋକ ॥
ବେଭାରେ ଗରୁଡ଼ ଘର ଗ୍ରାମର ଏ ଗଣ୍ଡା । ନଦୀକୂଳେ ଉଆସ ତୋଳିଛି
ଚନ୍ଦ୍ରସେଣା । ୨୨୨ । ଡ଼ାକିଲେ ହାକିଲେ କେହି ଶୁଣିବାକୁ ନାହିଁ ।
ଆଣ୍ଠୁ ଗଣ୍ଠି ଛିଡ଼ିଲା ଜାଉଡ଼ା ଭୂଇଁଯାଇ । ୨୨୩ । ତରସ୍ତ ହୋଇଣ
ଆମ୍ଭ ଯାଉଅଛି ଛାଡ଼ି । ଉପରକୁ ଭୂଇଁ ଗୋଟି ପଡ଼ୁଅଛି ମାଡ଼ି ॥
ପଳାଇ ନ ପାରି ଅଟେଣ୍ଟେ ବୋବାଳି ଛାଡ଼ିଲା । ଧଇଁପଡ଼ା ବାବୁ ମୋର
ସର୍ବାଙ୍ଗ ବୁଡ଼ିଲା । ୨୨୪ । ତାହା ଶୁଣି ନନ୍ଦବାଳା ହସିଣ ଉଠିଲେ ।
ମହାବଳେ ଫୁପୁକାର କରିଣ ଗର୍ଜିଲେ ॥ ଅସମ୍ଭାଳେ ପଳାଇଲା ଘର-
ଦ୍ୱାର ଛାଡ଼ି । ଉପରକୁ ଭୂତ ଗୋଟି ପଡ଼ୁଅଛି ମାଡ଼ି । ୨୨୭ । କେତେ
ବାସ ଅସମ୍ଭାଳେ ଧାଇଁ ଖରତର । ଆଣ୍ଠୁ ଗଣ୍ଠି ଚକଟା ହୋଇଲା
ଜରଜର । ୨୨୮ । ଯେବଣ ବାଟକୁ ସେ ତରତ୍ରେ ଦେଲା ଚାହିଁ ।
ତରୁଲତା ସହିତରେ ନ ଦିଶନ୍ତି କେହି ॥ ବାଇ ଝାଙ୍କି ଥିଲା ପ୍ରାୟେ
ଦିଶେ ତାର ମୁଣ୍ଡ । ନେଳିକିଲଗିଲା ପ୍ରାୟେ ଖନ ମାଟିର ଭୁଣ୍ଡ । ୨୩୦ ।
କୌଣସି ଠାବରେ ଆଉ ରହିବାକୁ ନାହିଁ । ନନ୍ଦରାଜାଘରକୁ ସେ
ଯାଉଅଛି ଧାଇଁ । ୨୩୧ । ତାହା ଦେଖି ବିଚାର କରନ୍ତି ଗୋପମୁଖ
ଚନ୍ଦ୍ରସେଣା ଗରୁଡ଼ଙ୍କୁ କେ କଲା ଏମନ୍ତ । ୨୩୨ । କେ ବୋଲଇ
ଚନ୍ଦ୍ରସେଣା କରିଅଛି କଳି । ଅକାରଣେ ଗରୁଡ଼ ଖାଇଲା ମାଡ଼ ଗାଳି ।
କେ ବୋଲଇ ଆଣ୍ଠୁ ଗଣ୍ଠି ସବୁ ଛିଡ଼ିଗଲା । ଦୁଧ ଘର ଦେନା ଅବା
କାଠରେ ପଡ଼ିଲା ॥ କେ ବୋଲଇ ଗରୁଡ଼ ହୋଇଲା ଅବା ବାଇ ।
ହୁହୁରା ସଙ୍ଗତେ କିବା ଖାଇଛି ଗଞ୍ଜେଇ । ୨୩୪ । ଯୋଗ୍ନାଏ

ବୋଲନ୍ତି ଯେ ନ ଜାଣ ତୁମ୍ଭେ କିଛି । ଚନ୍ଦ୍ରସେଣା ଗଉଡ଼ଙ୍କୁ ଗୋଧାଣୀ
ଲିଖିଛି । ୧୩୬ । ଅସମ୍ଭାଳ ହୋଇଣ ପଳାଉଅଛି ଦାଣ୍ଡେ । ଭୂତ କି
ପିଶାଚ ତାର ବସିଅଛି ମୁଣ୍ଡେ । ୧୩୭ । ଏସନେ ବଚନ ଯେ କହନ୍ତି
ନାନାମୁଡ । ନନ୍ଦର ମନ୍ଦିରେ ଯାଇଁ ମିଳିଲା ଗଉଡ଼ । ୧୩୮ । ଥରହର
ହୋଇଯାଇ ଦ୍ୱାରେ ପଡ଼ିଗଲା । ନାନୀ ନାନୀ ବୋଲି ଖଣ୍ଡିଏ ଡାକ
ଦେଲା । ୧୩୯ । ଡାକର ଉପରେ ଡାକ ଦେଇ ଝଟକରି । ଧାଇଁ
ଆସ ଭଉଣୀର ହୋ ବୁଡ଼ିଲା ମୋ ଘର । ୧୪୦ । ମୋର ସମ୍ପଦ
ସରିଲା ଭଉଣୀ ଟିକି ଶୁଣ । ରାଧା ମଲା ମୋହର ପରାଣ ନ ଯାଇଣ ॥
ପଲଙ୍କ ଉପରେ ଯେ ଯଶୋଦା ଥିଲେ ଶୋଇ । ଶୁଣି ଭାଇ ତୁଣ୍ଡୁ
ଉଠି ଆଇଲେ ଯେ ଧାଇଁ । ୧୪୧ । ଅପୂର୍ବ ସୁନ୍ଦରୀ ସେ ଦିଶନ୍ତି
ଦିବ୍ୟ ଶୋଭା । ଧାଇଁକାରେ ଦ୍ୱାରେଣ ହୋଇଲେ ଆସି ଉଭା । ୧୪୩ ।
ଚନ୍ଦ୍ରସେଣାକାନ୍ତ ଅଛି ଭୂମିରେ ଯେ ପଡ଼ି । ରାଧା ରାଧା ବୋଲିଣ ବୁକୁରେ
ମୁଏ ବାଡ଼ି । ୧୪୪ । ଦେଖିଣ ଯଶୋଦା ଦେବୀ ତାଟକା ହୋଇଲେ ।
ଉନ୍ମାଦ ହୋଇଲା ବୋଲି ତୋଳିଣ ଧଇଲେ । ୧୪୫ । ମୁଖୁଁ ଧୂଳି
ଝାଡ଼ିଣ ଆଉଁସିଦେଇ ଦେହ । ଆପଣା ପଣନ୍ତ ଯେନି ପୋଛି ଦେଲେ
ଲୁହ । ୧୪୬ । ସୁବର୍ଣ୍ଣ ଝରିରେ ନୀର ଦିଆଇଣ ଆଣି । ଚନ୍ଦ୍ରସେଣା
ମୁଖରେ ସିଞ୍ଚିଲେ ବେଗେ ପାଣି । ୧୪୭ । ନନ୍ଦରାଜା ବୋଲନ୍ତି ଶୁଣିଣ
କିସ ଗୋଳ । ମୁହୁଲୀ ବୋଲେ ହେଲା ଏ ବିଷମ ଭଲ ॥ ଚନ୍ଦ୍ରସେଣା
ଆସି ପଡ଼ିଅଛି ମୂର୍ଚ୍ଛା ବଳେ । ଆପଣେ ଯଶୋଦାଦେବୀ ଧରିଛନ୍ତି
କୋଳେ । ଭୂମିରେ ପଡ଼ିଣ ଆଣ୍ଟୁ ଗଣ୍ଠି ଛିଡ଼ିଗଲା । ଛଟପଟ ହେଉଅଛି
ରୁମ୍ଭନଜ ଶଳା । ୧୫୦ । ଏସନ ବଚନକୁ ଶୁଣିଣ ନୃପସାଇଁ । ଝଟକରି
ହୋଇଣ ଅଇଲେ ବେଗେ ଧାଇଁ । ୧୫୧ । ଛିଡ଼ା ହୋଇଣ ଛାମୁରେ
ବୋଲେ ନୃପନାହା । ବିପରୀତ କଉମତ ଶୁଣା ନାହିଁ ଏହା । ୧୫୨ ।
ନନ୍ଦରାଜା ବୋଇଲେ ତୁ କହନାକି ମୋତେ । ଏଡ଼େ ବଡ଼ ଅବସ୍ଥା
କେ ଦେଲା ବାବୁ ତୋତେ । ୧୫୩ । ରାଜାଙ୍କ ବଚନ ଶୁଣି ବୋଲେ
ନନ୍ଦ ଶଳା । କି କହିବ ଭିଣୋଇ ବୁଡ଼ିଲା ମୋର ଭେଳା । ୧୫୪ ।
ଅଗୋଚର କଥା ବାବୁ ଦଇବର କୃତ୍ୟ । ଶଳାଭାଉଜଙ୍କୁ ତୋର

କଟିଅଛୁ ଭୂତ । ୨୫୫ । ଭୟଙ୍କର ଦେଖିଣ ପାଇଛୁ ବଡ଼ ଶଙ୍କା ।
ପ୍ରାଣ ଘେନି ଭିଣୋଇ ମୁଁ ପଳାଇଲି ଏକା । ୨୫୬ । ଚକ୍ଷୁ ଦୁଇ
ପିଙ୍ଗଳ କାଳିଆ ତାର ପେଟ । ଦଶଲୋକଙ୍କର କୁଣ୍ଡ ନ ପାଇବ
ମୋଟ । ୨୫୭ । ଏକ ଭୂତ ଗୋଟିକେ ପୂଞ୍ଛି ତେଢ଼େ ଘର । ମଥା-
ଚୁଳି ଉପରେ ଲାଗିଛୁ ଯାଇଁ ଶିର । ୨୫୮ । କି କହିବ ଭଣୋଇ
ତାହାର ଦେବ୍ୟ ତେଜ । ରାଧା ମଲା ମୋହର ଜୀବନ ଯାନ୍ତା ଆଜ ॥
ଉଭିଣ୍ଠି ଗୃହିଁଲା ମୋତେ ଦନ୍ତ ଦାଣ୍ଡି ଭାଣ୍ଡ । ଡରେ ପଳାଇ ଅଇଲି
କେନ୍ଦୁବାଉ ଛାଡ଼ି । ୨୬୦ । ପୂର୍ବଭାଗ୍ୟ ଥିଲାକୁ ରକ୍ଷିଲେ ଆଦିମୂଳ ।
ହସ୍ତ ବଢ଼ାଇଣ ମୋର ଧରୁଥିଲା ବାଳ । ୨୬୧ । ଯଶୋଦା ବୋଇଲେ
ସତ କହ ମୋ ନାତୃତ । ସତ କହ ରାଧିକାକୁ ଲାଗିଛୁ କି ଭୂତ । ୨୬୨ ।
ଚନ୍ଦ୍ରସେଣା ବୋଇଲା ହୋଇଲି ତୁମ୍ଭେ ବାଉ । ଜୀବନ୍ତେ ରାଧାକୁ ମୁଁ
ଦେଖିବି ଆଉ କାହିଁ । ୨୬୩ । ସୁକୁମାରୀ ସୁନ୍ଦରୀ ଅଟଇ ନବବାଳୀ ।
ହାଡ଼ ଶୋଷି ସହିତେ ସମସ୍ତ ଦେଲା ଗିଳି । ୨୬୪ । କଣ୍ଟଜଳାବାଟେ
ମୁଁ ଯେ ଗୃହିଁଦେଲି ଗଣ୍ଡେ । ରକତଳୁଗା ଏ ତାର ଲାଗିଅଛୁ ତୁଣ୍ଡେ ॥
ଏସନେ ବିଗ୍ରହ ଯେ ହୁଅନ୍ତି କୁହାକୁହି । ଅନ୍ତର୍ଯ୍ୟାମୀ ଠାକୁର ତା
ଜାଣିଲେକ ତହିଁ । ୨୬୫ । ରାଧିକାକୁ ଗୃହିଁଣ ବୋଲନ୍ତି ଚକ୍ରଧର ।
କି ବୁଦ୍ଧି କରିବା ଏବେ କହ ନାଗିବର । ୨୬୬ । ଭ୍ରାନ୍ତ ଯେ କରିଣ
ଗଲା ଚନ୍ଦ୍ରସେଣା ମୂଢ଼ । ମାତାଙ୍କ ଛାମୁରେ ଯାଇଁ କହୁଛି ଗଉଡ଼ ॥
ବିପରୀତ କଥାମାନ ତାର ତୁଣ୍ଡୁ ଶୁଣି । ମାତା ପିତା ଡାକିବେ
ଅମ୍ଭଙ୍କୁ ଏହିକ୍ଷଣି । ୨୬୯ । ପଲଙ୍କ ଉପରେ ଶୋଇଛନ୍ତି ବଳଦେବ ।
ଗେଲ ଶୁଣ ତାହାଙ୍କର ନିଦ୍ରା ଭାଙ୍ଗି ନିବ । ୨୭୦ । ଡରେ ମାତା
ଥରହର ଏହିକ୍ଷଣି ହୋଇ । ମୋତେ ବାର ବାର ଶେଯେ ଦଣ୍ଡିବେ
ଯାଇଁ । ୨୭୧ । ଅମ୍ଭ ବେନିଭାଇଙ୍କି ଖୋଜିବେ ଯାଇଁ ନନ୍ଦ । ନ
ଦେଖିଲେ ଏ କଥା ହୋଇବ ବଡ଼ ଦନ୍ଦ । ୨୭୨ । ନିର୍ଭୟ ହୋଇଣ
ତୁମ୍ଭେ ଥାଅ ଚନ୍ଦ୍ରାବଳୀ । ନନ୍ଦମନ୍ଦିରକୁ ଅମ୍ଭେ ଯାଉଅଛୁଁ ଚଳି ॥
ବାଳକ ମୂରତି ହୋଇ ପହଞ୍ଚିବୁ ଯାଇଁ । ବଳରାମ କୋଳରେ
ଶୋଇବୁ ତୁନି ହୋଇ ॥ ରାଧିକା ବୋଇଲେ ତୁମ୍ଭେ ଶୁଣ ମୋ

ବଚନ । ଉଦ୍ଧବଙ୍କ ଦେଲା ପ୍ରଭୁ ଦେବ ବୃନ୍ଦାରଣ୍ୟ ॥ ଭୂପୃରେ ଗଡ଼ୁଛ ଯେ ପଳାଇଯାଏ ଡରେ । ତୋତେ ମୋତେ ଦୁହିଙ୍କ ନ ଦେଖି ଏହି ଘରେ ॥ ଆଜ ଏହି ଦୂତ ରୂପ ଦେଖି ବ୍ରହ୍ମଯୋଗୀ । ଇନ୍ଦ୍ର, ଚନ୍ଦ୍ର ହୋଇଲେତ ନ ପାରିବେ ଦଶି ॥ ବହୁତ ଧନରେ ପ୍ରଭୁ ପଡ଼ିଅଛୁ ଭେଟ । ଏଡ଼େ କଥା କାହିଁକି କହୁଛ ନନ୍ଦଗୋଠ ॥ ଶ୍ରୀକୃଷ୍ଣ ବୋଇଲେ ସଖି ଶୁଣ ଅଗୋ ରାଧା । ସୁରତ ବେସକୁ ମୁଁ ଯେ କରଇ ଶରଧା ॥ ଏବେ ତୋହ ମନକୁ ବଳିଲ ଯେବେ ମୁହିଁ । ଭିନ୍ନ ମୂର୍ତ୍ତି ଗୋଟିଏ ଧରିବୁଁ ପ୍ରାଣ ସହି ॥ ମୋହର ବଚନ ଶୁଣ ଅଗୋ ନୀଳକେଶୀ । ମାୟା କୁମରକୁ ଆମ୍ଭେ ଦେଉଅଛୁଁ ପେଷି ॥ ଅପୂର୍ବ ମୂରତି ଧରି ଆମ୍ଭ ପ୍ରାପ୍ତ ହୋଇ । ବଳରାମ କୋଳରେ ନିଶ୍ଚିନ୍ତେ ଥିବ ଶୋଇ ॥ ଏତେ ବୋଲି ହରଷେ ହୋଇଲେ ଜଗନ୍ନାଥ । ଆପଣା ଅଙ୍ଗରୁ ଜାତ କଲେ ଏକ ମୂର୍ତ୍ତି । ୨୮୩ । ଚରଣେ ନୂପୁର କର୍ଣ୍ଣେ ଶୋଭଇ କୁଣ୍ଡଳ । ବାହାରେ ବାହୁଟି ଯେ ଡାହୁରେ ଦିବ୍ୟ ରୂଳ ॥ ଲଲାଟ ପଟରେ ଶୋଭେ ଚନ୍ଦନର ଟିକା । ହୃଦରେ ପଦକ ଯେ କଣ୍ଠରେ ସୁନାସୁତା । ୨୮୪ । ସୁବର୍ଣ୍ଣର ଗୁଣାରେ ଶୋଭଇ ଚିକୁଫନ୍ଦଲ । ଆକାଶରେ ଶୁକ୍ର କି ଉଦିଅ ନିଶାକାଳେ । ୨୮୬ । ଶ୍ରୀକୃଷ୍ଣ ବୋଇଲେ ରାଧା ଦେଖ ମୋର ରୂପ । ଆମ୍ଭର ରୂପକୁ ଯେ ହୋଇଲା ଦିବ୍ୟରୂପ । ୨୮୭ । ଘଟନମୂରତି କିସ ପଟାନ୍ତର ଦେବା । ତ୍ରିଭଙ୍ଗିମା ମୂରତି ଦିଶଇ ଦିବ୍ୟଶୋଭା । ୨୮୮ । ରାଧିକା ବୋଇଲେ ପ୍ରଭୁ ନିସ୍ତରିଲି ମୁହିଁ । ଏକ ରୂପ ଦୁଇ ମୂର୍ତ୍ତି ଦେଖିଲି ଗୋସାଇଁ ॥ କରୁଣାସାଗର ପ୍ରଭୁ ଏବେ ଆଜ୍ଞା ହେଉ ! ନନ୍ଦ ମନ୍ଦିରକୁ ଏ କୁମର ଚଳିଯାଉ । ୨୯୦ । ଏହିକ୍ଷଣି ଲେଉଟିବେ ତୁମ୍ଭର ନିଜ ଅଙ୍ଗ । ବଳରାମ ସନ୍ନିଧିରେ ଶୋଇଥାଉ ଯାଇ । ୨୯୧ । ରାଧିକା ବଚନ ଶୁଣି ଦେବ ଚକ୍ରଧର । ସେହିକ୍ଷଣି କଲେ କୃଷ୍ଣ ସେହି ପରକାର ॥ କୁମରକୁ ପ୍ରସନ୍ନେ ବୋଇଲେ ଅଧିକନ୍ଦ । ବଳରାମ ସନ୍ନିଧେ ତୁ ଯାଇଥିବୁ ନିଦ ॥ କୃଷ୍ଣ ମାୟା ବଳ ଆଜ୍ଞା ଦେଲେ ଭାବଗ୍ରାହୀ । ତୋହ ମୁଖେ ଯିବୁ ତୁ ଯେ ନ ଦେଖିବେ କେହି । ପଶିଲେ

ତୋହର ନଗ୍ର ବୁଲିଆସ ବାବୁ । ମୋହର ବଚନ ତୁ ଯେ ନିଶ୍ଚୟ କରିବୁ ॥ ନୂଆ ବେଣୁ ଗୋଟିଏ ଦିଆଇଦେଲେ ହରି । ବୋଇଲେ ମୁରଲୀ ଚୋଟି ହସ୍ତେ ଥିବୁ ଧରି ॥ ବସ୍ତ୍ରା ରଖି ଗଲାବେଳେ ହସ୍ତେ ଘେନିଥିବୁ। ଶୋଇଥିଲାବେଳେ କର୍ଣ୍ଣମୂଳେ ଦେଇଥିବୁ ॥ ଶ୍ରୀମୁଖରୁ ଆଜ୍ଞା ଯହୁଁ ପାଇଲେ କୁମର । ହରି ହରି ବୋଲି ଘରୁ ହୋଇଲେ ବାହାର ॥ ଚକ୍ରଧର ଶ୍ରୀମୁଖରୁ ଆଜ୍ଞା ପାଇଅଛୁ । ହରି ବ୍ରହ୍ମା ହେଲେ ତାର ଭୟ ନାହିଁ କିଛୁ । ମାଧବଙ୍କୁ ସୁମରି କୁମର ଚୂଡ଼ାମଣି । ହସ୍ତ ମାରି ଫେଡିଦେଲେ କବାଟ କିଳଣୀ ॥ ହରି ହରି ବୋଲି ଘରୁ ହୋଇଲେ ବାହାର । ତତଷଣ ମିଳିଲେ ନନ୍ଦର ସିଂହଦ୍ୱାର ॥ ବେଢ଼ିଣ ଗୋପାଳେ ବସି ଶୁଣୁଛନ୍ତି କଥା । ଚନ୍ଦ୍ରସେଣା କହୁଅଛି ଭୂତର ବାରତା ॥ ମାୟା କରିଛନ୍ତି କୁମରଙ୍କୁ ଭାବଗ୍ରାହୀ । କୁମର ଯେ ଦେଖୁଛନ୍ତି ନ ଜାଣନ୍ତି କେହି ॥ ନିସନ୍ଧି ହୋଇ ଜନରେ ସେ ସ୍ଥାନ ପୂରିଛି । ଏକା ମଝିରେ ଟିକିଏ ଛଡ଼ା ମାର୍ଗ ଅଛି ॥ ସେଠାରେ ଗଉଡ଼ କହୁଅଛି ଭୂତକଥା । ଡେଇଁ ଗଲେ ଗଲାବେଳେ ଚନ୍ଦ୍ରସେଣା ମଥା ॥ ଦୁର୍ଗାମାଧବଙ୍କୁ ମନେ ସୁମରଣା କରି । ସିଂହଠାଣି କରିଣ ସେ ମାୟାରୂପଧାରୀ ॥ ବାମଭୁଜେ ଶୋଭଇ ଅପୂର୍ବ ବେଣୁଖଣ୍ଡ । ବିକ୍ରମିଣ ଡେଇଁଗଲେ ଚନ୍ଦ୍ରସେଣା ମୁଣ୍ଡ ॥ ଦେଖୁଁ ଦେଖୁଁ ବିକ୍ରମି କୁମର ଗଲେ ଧାଇଁ । ବିଷ୍ଣୁମାୟା ଘୋଟିଅଛି ନ ଜାଣନ୍ତି କେହି ॥ ସଧୀର ସଧୀର ହୋଇ କରିଣ ଗମନ । ଖଣ୍ଡିଦୂରୁଁ ଦେଖିଲେ ପଲଙ୍କ ହିତପନ । ୩୦୯ । କୁମର ଭାବିଲେ ଆଜ୍ଞା ଦେଲେ ଜନାର୍ଦ୍ଦନ । ଏହି ପଲଙ୍କରେ ନିଶ୍ଚେ କରିବି ଶୟନ । ୩୧୦ । ଏତେ ବୋଲି ବଂଶୀ ଗୋଟି ମଥା ପରେ ଦେଇ । ବଳରାମ ସନ୍ନିଧେ ଶୋଇଲେ ଭିନ୍ନ ହୋଇ । ୩୧୧ । ପରୀକ୍ଷିତ ଆଗେ ବ୍ୟାସନନ୍ଦନ କହିଲେ । ଗୋପୀନାଥ ମୂର୍ତ୍ତି ଅସି ପଲଙ୍କେ ଶୋଇଲେ ॥ ଯେବଣ ଅଙ୍ଗକୁ ହର କରୁଛନ୍ତି ଧ୍ୟାନ । କୃଷ୍ଣ ଦାସ ବୋଲେ ମୋ ଜୀବନ ଧନ୍ୟ ଧନ୍ୟ ॥ ପୁର ମଧ୍ୟରେ ବିଖ୍ୟାତ ଯେବଣ ଚରଣ । ସେହି ପଦ୍ମପାଦେ ମୁହିଁ ପଶିଲି ଶରଣ ॥

ଏଥୁ ଅନନ୍ତରେ କଥା-ପରିବନ୍ଧମାନ । ସାବଧାନ ହୋଇ ଶୁଣ
ସକଳ ସୁଜନ । ୧ । ରାଧିକାଙ୍କ ଯୋଗେଣ ଆପଣେ ଜଗନ୍ନାଥ । ନାନା
ରଙ୍ଗେ ସୁରତି କରନ୍ତି ଅପ୍ରମିତ । ୨ । ସମସ୍ତ ଗଉଡ଼ମାନେ ହୋଇ
ଏକ ମେଳ । ନନ୍ଦରାଜା ମନ୍ଦିରେ କରିଲେ କୋଳାହଳ । ୩। ଯଶୋଦା
ବୋଇଲେ ଏତ ବିପରୀତ ହେଲା । ଅକାରଣ ମୋହର ଭାରିଜା ଗୋଟି
ମଲା । ୪ । ଦଇବ ବିଧାତା ମୋତେ ଏ କଷଣ ଦେଲା । ବୃଦ୍ଧ-
କାଳେ ଭାର ମୋର ବିପତ୍ତିକ ହେଲା । ୫ । ବୁଦ୍ଧିମତୀ ଗୁଣବତୀ
ସୁନ୍ଦରୀଙ୍କ ରାଜା । ଆଉ କାହିଁ ପାଇବି ସେ ଏମନ୍ତ ଭାରିଜା ।୬।
ଏତେ ବୋଲି ଯଶୋଦା ଶୋକଭର ହୋଇ । କାହ୍ନୁ ଶଙ୍ଖଚପଣଙ୍କୁ
ଛୋଟିଉଛନ୍ତି ଯାଇ । ପୀଡ଼ାସ୍ଥାନ ନିପଟରେ ବସାଇଦେଲେ ରାଣୀ ।
ଉଠ ଉଠ ବୋଲିଣ ଡାକନ୍ତି ପୁଣି ପୁଣି । ୮ । ପଦ୍ମରେ ଯୋଇଲା
ବେଳ କେତେ ଯାଅ ନନ୍ଦ । ଧାଇଁ ଆସ ବାବୁ ମୋର ବୁଡିଲା ସମ୍ପଦ ।
ଭାଇ ବେନିଗୋଟି ତୁମ୍ଭେ ଶୋଇଥାଅ ଏକା । ଗୋପପୁରଯାକ
ବାବୁ ପଡ଼ିଅଛି ଡକା ।୧୦। ଧରୁ ଧରୁ ମଉଳା ସେତା ପଳାଇ ଅଇଲା ।
ପ୍ରଚଣ୍ଡ-କାଳିଅଭୂତ ରାଧାକୁ ଖାଇଲା । ୧୧ । ତୋହର ସେ ନନ୍ଦ
ମାଇଁ ମଲା ରାଧାବାଳୀ । କାହା କୋଳେ ବସି ତୁ ଖେଳିବୁ
ବନମାଳୀ । ୧୨ । ନଷ୍ଟପ୍ରୂ ଜାଣିଲି ମୋତେ ଦଇବ ଦଣ୍ଡିଲା । ଅକାଳ
ଚଡ଼କ ଆସି ଶିରରେ ପଡିଲା । ୧୩ । ନନ୍ଦରାଜା ବୋଇଲେ ଯେ
ଗୋପାଳଙ୍କୁ ଚାହିଁ । ତୁମ୍ଭେମାନେ ତୁନିହୋଇ ବସିଲ କିପାଇଁ । ୧୪।
ବାଡମାନ ଘେନିଣ ଗଉଡମାନେ ଚଳ । କି ବୋଲି ବୋଲଇ ଭୂତ
ଯମ୍ଭିରବା ବଳ । ୧୫ । ଏତେ ବୋଲି ସମସ୍ତ ଗଉଡେ ହୋଇ
ଗୋଠ । ଆଗେ ଆଗେ ଚନ୍ଦ୍ରସେଣା କଢ଼ାଇଲା ବାଟ । ୧୬ । ଚଳ
ଚଳ ଧର ଧର ମାର ମାର ବୋଲି । ଚନ୍ଦ୍ରସେଣା ଉଆସେ ପଶିଲେ
ଯାଇଁ ପେଲି । ୧୭ । ରାଧିକା ବୋଇଲେ ନାଥ ହୋଇଲାଟି ହଟ ।
ଘରେ ଆସି ପଶିଲେ ଲଉଡ଼ିଧରିଥାଟ । ୧୮ । ଚନ୍ଦ୍ରସେଣା କଥାରେ
ସମସ୍ତେ ଆସି କହି । କବାଟ ଭାଙ୍ଗିବେ ପ୍ରଭୁ କେନ୍ଦୁ ବାଡ଼ି ମାରି ।୧୯।
ଶ୍ରୀକୃଷ୍ଣ ବୋଇଲେ ଯେବେ ଭାଙ୍ଗିବେ କବାଟ । ଏହସଣ୍ଡି ଯିବାକୁ ସେ

ନ ପାଇବେ ବାଟ । ୨୦ । କବାଟ ଦ୍ୱାରରେ ଯେବେ ଲଗାଇବେ
ବାଡ । ମହାଘୋର କରିଣ ଖୁଣ୍ଟିବି ସିଂହରଡ ॥ ଏ ଯେବେ
ତେମନ୍ତ କରି ମୋତେ ବଳାଇବେ । ଏକ ହସ ଗୋଟିକେ ସମସ୍ତେ
ପଳାଇବେ ॥ କିଛୁ କୂଟ ମାୟା ନ ଜାଣନ୍ତି ବ୍ରଜଲୋକ । ଅନ୍ୟମାନେ
ଯେତେକ ସମସ୍ତେ ଯିବେ ଦେଖ । ୨୩ । ରାଧାକୁ ଯେ ଦେବରାଜ
ବଚନ କହନ୍ତି । ପଲଙ୍କ ଉପରେ ପ୍ରଭୁ ବିଜେ କରିଛନ୍ତି । ୨୪ ।
ଗୋପାଳେ ବୋଇଲେ ଅହେ ଚନ୍ଦ୍ରସେଣା ଭାଇ । କଞ୍ଜ ଜଳାବାଟେ
ତୁମ୍ଭେ ତତ୍ତ୍ୱ କର ଯାଇଁ ।୨୫। ହିପଣ୍ଡିକାଳିଆ ଭୂତ ଘରେ ପେଟିବ
ଥାନ୍ତି । ଘଡ଼ ଘଡ଼ ଗର୍ଜ୍ଜନ ଶବଦ ସେ କରନ୍ତି ॥ ରାଧିକାକୁ
ଖାଇ ଘୋର ଉଆସ ଉଟପରି । ଡରେ ପଳାଇଲା ଭୂତ ଗତ୍ତୁଡଙ୍କୁ
ଦେଖି ॥ ଚନ୍ଦ୍ରସେଣା ବୋଇଲା ମୁଁ କି ବୁଦ୍ଧି କରିବି । ଏଥର
ଦେଖିଲେ ମୁଁ ଯେ ନିଶ୍ଚୟ ମରିବି ॥ ଲହ ଲହ ଜିହ୍ୱା ସେ
ହଲାଉ ଥାଇ ଯେତେ । ପାଟି ବିସ୍ତାରଇ ନବ ଗିଳିବ ସେ ମୋତେ ।
କ୍ଷଣକ ମଧ୍ୟରେ ହାତ ଦୁଇ ଲମ୍ବ ହୋଇ । ଗିହ୍ଲା ମାତେ ବାଳକୁ
ଧରି ବାହାରଇ ॥ ଲମ୍ବ ଲମ୍ବ ଦୁଇ ହାତ ଦେଖିଲେ ଡରିବା ।
ଦରାଣ୍ଡି ଧଇଲେ ବାବୁ ସମସ୍ତେ ମରିବା । ବରାଟି ଗିହ୍ଲେ
ମୋତେ ଦନ୍ତପାଟି ଭିଡ଼ । ରକ୍ତ ଆଖି ଦେଖିଲେ ଜୀବନ ଯିବ ଛାଡ଼ ॥
ଦଇବର ଯୋଗେ ଭୂତ ରାଧାକୁ ଖାଇଲା । ମୋହର ମରଣ ଆସି
ନିକଟ ହୋଇଲା ॥ ନନ୍ଦରାଜା ବୋଇଲେ ଗତ୍ତୁଡବନ୍ଧେ ଗିହ୍ଲ ।
ତୁମ୍ଭେମାନେ ଥାଅ କିନା ଆମ୍ଭେ ଦେଖୁଁ ଯାଇଁ ॥ ଏତେ ବୋଲି
ଗମନ ସଧୀରେ କଲେ ରାୟେ । ଅବହେଳେ ମିଳିଲେ କବାଟଦ୍ୱାର
ଯାଏ ॥ କଞ୍ଜଜଳାବାଟରେ ନିରେଖି ଦେଲେ ଗିହ୍ଲ । ଶୂନ୍ୟ ଘର
ହୋଇଅଛି କେଉଣେ କେହି ନାହିଁ । ୩୬ । ପିତାଙ୍କୁ ଦେଖିଣ ପ୍ରଭୁ
ପଲଙ୍କୁ ଉଠିଲେ । ଆଣ୍ଠୁ ହୋଇ କରି ପ୍ରଭୁ ନମସ୍କାର କଲେ । ୩୭ ।
କାନ୍ଧମୂଳେ ଆଉଜଇ ବହିଲେ ଆଦମୂଳ । ରାଧିକାକୁ ଲୁଚାଇ ଅଛନ୍ତି
ପାଦତଳ ॥ ଘଡ଼ିଏ ପର୍ଯ୍ୟନ୍ତ ନନ୍ଦ ଗିହ୍ଲଛନ୍ତି ରହି । ସେଠାରେ
ଶବଦ କାହିଁ କିଛି ଶୁଭୁ ନାହିଁ ॥ ଗଉଡ଼ଥାଟକୁ ଗିହ୍ଲ ବୋଲୁଛନ୍ତି

ରାଜା । ଅହେ ଚନ୍ଦ୍ରସେଣା ମଲୁ ତୋହର ଭାର୍ଯ୍ୟା । ୩୦ ।
ଛାଡ଼ିଯାଇ ନେଉଁ ନଇଲୁ ବ୍ରଜପୁର । ରାଧିକାକୁ ନେଇଣ ପଳାଇ
ଗଲୁ ଦୂର । ୪୧ । ଏତେ ବୋଲି ନନ୍ଦ ଯେ କବାଟ ଦ୍ୱାର ଛାଡ଼ି ।
ଗଉଡ଼ଥାଟରେ ଆସି ମିଳିଲେ ବାହୁଡ଼ି । ୪୨ । ଗୋପାଳେ
ବୋଇଲେ ଅହୋ ଚନ୍ଦ୍ରସେଣା ଉଠ । ଭୂତ ପଳାଇ ଗଲାଣି ଫିଟାଅ
କବାଟ ॥ ଚନ୍ଦ୍ରସେଣା ବୋଇଲା ମୁଁ ପାଇଅଛୁ ଦକା । ଗୃହଜଣ
ଲୋକ ମୋ ପାଖରେ ଥିବ ସଖା । ୪୪ । ଏତେ ବୋଲି ଗଉଡ଼
ଉଠିଲା ସ୍ଥିର ହୋଇ । କଣ୍ଟକଳା ବାଟରେ ନିରେଖି ଦେଲା ଚାହିଁ ॥
ପିତାଙ୍କୁ ଦେଖିଣ ପ୍ରଭୁ ଆଡ଼ ହୋଇଥିଲେ । ସେହି ରୂପ ହୋଇ
ଯାଇଁ ପଲଙ୍କେ ବସିଲେ । ୪୬ । ଚନ୍ଦ୍ରସେଣା ବୋଇଲା ମୁଁ ମରିବି
ଏଥର । କାଳିଆ କାଳିଆ ହୋଇ ଦିଶୁଅଛୁ ଘର । ୭ । ଆଉ
ଦ୍ୱାରେ ନିରେଖିଣ ବାହାର ଦେଲା ଚାହିଁ । ବସିଣ ଉଠିଲେ ପ୍ରଭୁ ଠହ
ଠହ ହୋଇ ॥ ଗଉଡ଼ ବୋଇଲା ବାବୁ ଥାଅରେ ସମସ୍ତ । ଉଜାଡ଼
ହୋଇଲା ମୋତେ ଗିଳୁଅଛୁ ଭୂତ । ୪୯ । ଆଖି ବୁଜି ବୁକ
ହସ୍ତ ବୁକୁରେ କୋଡ଼ଇ । ଛଟପଟ ହେଉଅଛୁ ଚାହିଁ ନ ପାରଇ । ୫୦ ।
ଖଣ୍ଡଦୂରେ ରମ୍ଭକ ପଡ଼ିଲା ମୁହଁ ମାଡ଼ । ସଙ୍ଗ ଲୋକମାନେ ଡାକୁ
ପଳାଇଲେ ଛାଡ଼ି । ୫୧ । ଶ୍ରୀକୃଷ୍ଣର ହସ ଦେଖି ନ ଦିଶଇ ବାଟ ।
ଅସମ୍ଭାଳ ହୋଇଲେ ଲଉଡ଼ି ଧରିଥାଟ । ୫୨ । ଗୋପାଳେ ବୋଇଲେ
ବାବୁ ଚନ୍ଦ୍ରସେଣା ମଲା । ଭୂତ ନାହିଁ ବୋଲି ଯେ ଘରକୁ ପଶିଗଲା ॥
ବିଧାତା କଢ଼ାଇ ନେଲା କର୍ମର ଭବିଷ୍ୟ । ଭାର୍ଯ୍ୟା ଲାଗିଣ ଯେ
ଆପଣେ ଗଲା ନାଶ । ୫୪ । ପଛକୁ ନ ଚାହିଁ ପଳାବନ୍ତୁ ବ୍ରଜପାଏ ।
ନନ୍ଦରାଜା ବୋଇଲେ ନ କର ବାବୁ ଡରେ ॥ ଏଣେ ତେଣେ
ହୋଇ ବାବୁ ନ ପଳାଅ କେହି । ଚନ୍ଦ୍ରସେଣା ପଡ଼ିଛୁ ଯେ ଘେନି
ଆସ ଯାଇ ॥ ଗୋପାଳେ ବୋଇଲେ ତୁମ୍ଭେ ଶୁଣ ନନ୍ଦରାୟେ । ଆମ୍ଭେ
ମାନେ ଯିବାକୁ ଯେ କରୁଅଛୁ ଭୟେ । ୫୭ । ଆପଣେ ଶାଙ୍କୋଳି
ନେଇ ଆପଣା କୋଡ଼ରେ । ଦେଖୁ ଦେଖୁ କେମନ୍ତେ ପଶିବୁ
ଯମପୁରେ ॥ ନନ୍ଦରାଜା ବୋଇଲେ ଉଭାବ ହୋଇ ଯାଅ ।

ସଂସ୍ତେହେଁ କେନ୍ଦୁବାଉ ହସ୍ତେ ଘେନ ଥାଅ । ୬୯ । ତୁଷ୍ଟ ଘର ଦେଖିଣ ଅଇଲୁଁ ଅମ୍ଭେ ଘୁଞ୍ଚ । କବାଟକଣରେ ଭୂତ ବସି ଥିଲା ଲୁଚ । ୭୦ । ଏ କଥାମାନଙ୍କୁ ତୁମ୍ଭେ ନ ଦାଅ ଯେ ଉତ୍ତର । ସର୍ବ-ମଙ୍ଗଳାଙ୍କୁ ଏବେ ସ୍ମରଣା କର । ୭୧ । ଶ୍ରୀଗୁରୁ ପ୍ରସନ୍ନେ କିଛି ଭୟ ଭ୍ରାନ୍ତ ନାହିଁ । ଜଗନ୍ନାଥ ମଙ୍ଗଳା ରଖିବେ ସାହା ହୋଇ ।୭୨। ରାଜାଙ୍କର ବଚନ ଯେ ଶୁଣିଲେ ଗୋପାଳେ । ସମସ୍ତେହେଁ ବାହାର ହୋଇଲେ ଏକାବେଳ । ୭୩ । ମାର ମାର ବୋଲିଣ କରନ୍ତି ଘୋର ରଡ । ଆଗପଛ ଭୂମିରେ ପିଟନ୍ତି କେନ୍ଦୁବାଡ । ୭୪ । ବନ ମୃଗ ଭୟେ ଯେସନେ ହରିଣୀ ଉଭରେ । ଚନ୍ଦ୍ରକତ୍ତ ଗୃହାନ୍ତି ମଝିଙ୍କ ପିଠି କରେ । ୭୫ । ବଳେ ବଳିଆର ଯେ ଲଉଡଧର ଥାଟ । କଳନା ନ ଯାଇ ସର୍ବେ ହୋଇଛନ୍ତି ଗୋଠ ॥ ସହସ୍ରେ ମିଳିଲେ ଯେ ଗଉଡବୃନ୍ଦ ଗୃହ । ଅନ୍ତର୍ଯ୍ୟାମୀ ଠାକୁର ତା ଦେଖୁଛନ୍ତି ରହ । ୭୬ । ରାଧିକାଙ୍କୁ ଗୃହିଣ ବୋଲନ୍ତି ଦନୁଆରି । ଅନ୍ୟ ବେଳ ପରି ହସିବାଙ୍କ କହ ସଖୀ । ୭୮ । ରାଧିକା ବୋଇଲେ ପ୍ରଭୁ ଯେଣେ ରହିଥାନ୍ତୁ । ଚନ୍ଦ୍ରସେଣା ଗଉଡଙ୍କୁ ଏଠାରୁ ନଅନ୍ତୁ । ୭୯ । ଅଟେ ଗୋପାଳ ମାନେ ଝେଙ୍କଛନ୍ତି ବାଡ । ହସିଲେ ତାହାଙ୍କୁ ପୁଣ ପଳାଇବେ ଛାଡ ॥ ମଲା ପ୍ରାଣୀଠାରେ କେତେ ମାରିବାକ ମାଡ । ଏଥର ହସିଲେ ନିଶ୍ଚେ ମରିବ ଗଉଡ । ୮୧ । ମହାପ୍ରଭୁ ହୋଇ ତୁମ୍ଭେ ନ କର ଅନାଇ । ଏକା ଘର ଗଉଡଙ୍କୁ ଦେବ କେତେ ଶାସ୍ତି । ୮୨ । ଶ୍ରୀକୃଷ୍ଣଙ୍କୁ ରାଧା ଏହା କହିବାର ବେଳେ । ଗଉଡେ ମିଳିଲେ ଯାଇ କବାଟର ଦ୍ୱାରେ ॥ ଅଧିକୁଙ୍କ ପଡଥିଲା ଚନ୍ଦ୍ରସେଣା ମୂଢ଼ । ଭରସା ପାଇଣ ତହୁଁ ଉଠିଲା ଗଉଡ । ଚନ୍ଦ୍ରସେଣା ମୁଖ ଗୃହେଁ ଗୋପସୁତେ ବୋଲି । ଧୀର ଧୀର ହୋଇ ବାରୁ ଧାରିରୁ କି ଗୃଲି । ୮୫ । ଥୋକାଏ ବୋଇଲେ ଗୃଲି ନ ପାରିଲେ ଅବା । ଢେଣାଏଁ ଢେଣାଏଁ ଧରି ଘୋଷଡାଇ ନେବା ॥ ଏତେ ବୋଲି ଗଉଡଙ୍କୁ ଧରି ଚନ୍ଦ୍ରଯୋଏ । ଘୋଷାଡଣ ଆଣିଲେ କବାଟ ଦ୍ୱାର ଯାଏ । ୮୭ । ନନ୍ଦବାଳା ବୋଇଲେ ହୋ ବୁଡଥିଲା ଭେଳା । ମଲା ବୋଲି ଜାଣିଥିଲୁ ଅମ୍ଭ କାଳ ଶଳା । ୮୮ । ଏବେ

ସେ ପାଇଲା ପ୍ରାଣ ଯଶୋଦାର ଭାଗ । ଘୋଷନ୍ତାଇ ଆସିଲେ
ତାହାଙ୍କ ଦୋଷ ନାହିଁ । ୭୯ । କି ବୁଦ୍ଧି କରିବା ଏବେ ବିଚାରିବା
ଆସ । ଭୂତ ଯୋଗୁଁ ଗୋପପୁର ହେଉଅଛି ନାଶ ।୮୦। ସବୁଙ୍କୁ ଗିଳିବ
ଏଥି ନ ରଖିବ କିଛି । ଯାହାଙ୍କୁ ଖାଇଣ ଭୂତ ଆଶା ବଳାଇଛି ।୮୧।
କେ ବୋଲଇ ସମସ୍ତେ ମୋହର ବୋଲକର । ଶଗଡପୁରେ କରି
ଗୃହ ବେଢିଥିବା ଘର । ୮୨ । କେ ବୋଲଇ ଭୂତକୁ ତେଜନ୍ତୁ
ନୋହେ ଶକ୍ତି । ତନ୍ଦ୍ରସେଣା ଘରଦ୍ୱାରେ ପକାଇବା ଭାଙ୍ଗି । ୮୩ ।
କେ ବୋଲଇ ଘରଦ୍ୱାର ନ କରିବା ନାଶ । ପିଢ଼ା କଣାକରି
ସର୍ବେ ଅନାଇଁବା ଆସ । ୮୪ । କେ ବୋଲଇ ପିଢ଼ାପରେ ଉଠିଥିବା
ଭଲ । ହସ୍ତ ବଢ଼ାଇଣ ଯେବେ ବାଳଧରି ନେଲା । ୮୫ । କେ
ବୋଲଇ ସମସ୍ତେହେଁ ହେବା ଜଗାଳି । କବାଟ ଭଙ୍ଗିବା ଆମ୍ଭେ
କେନ୍ଦୁବାଡ଼ି ମାରି । ୮୬ । ଏମନ କହୁଛନ୍ତି ଗୋପାଳ ସମସ୍ତ ।
ଲଉଡ଼ି ବୁଲାଇଣ ହୋଇଲେ ମହାମତ୍ତ ।୮୭। କେ ବୋଲଇ ଧାଇଁରେ
ଭୂତକୁ ବେଗେ ମାର । ନ ମଲା ବେଳକୁ ପଛେ ପୋଡ଼ିଦେବା
ଘର । ୮୮ । ଏକର ପଛରେ ବେଢ଼ି ଆରକ ରହିଲେ । ଶଗଡପୁର
କରି ଏକ କ୍ଷଣକେ ବେଢ଼ିଲେ । ୮୯ । କେ ବୋଲଇ ଗୋପଦ୍ୱାରେ
ଭୂତ କଲା ଢକା । ଲଉଡ଼ି ବୁଲାଇ କେ ଢଟକୁ ମାରେ ଠେକା ।୯୦।
ଧାଇଁ ଧାଇଁ ରହିଲେ ଗୋପାଳେ ସବୁ ପଡ଼ି । ଖିଲିଲା କବାଟକୁ
ମାରନ୍ତି କେନ୍ଦୁବାଡ଼ି । ୯୧ । ତାହା ଦେଖି ରାଧାଙ୍କୁ ବୋଲନ୍ତି
ପଦ୍ମଆଖି । ଗଉଡ଼ଙ୍କ ଗୋଳମାଳ ଦେଖ ପ୍ରାଣସଖି । ୯୨ ।
ଏହିକ୍ଷଣି ରାଧିକା ଗର୍ଜ୍ଜିବ ଯେବେ ମୁହିଁ । ଗୋପ ଛାଡ଼ି ପଳାଇବେ
ଦେଖୁଥିବ ତୁହି । ୯୩ । ଶଗଡପୁର କରି ଦେଖ ବସିଛନ୍ତି ବେଢ଼ି ।
ମୋହର ବୋଲରେ ରାଧା ଦେବ ସଂହରିଡ଼ି ।୯୪। ରାଧିକା ବୋଇଲେ
ତୁମ୍ଭେ ଶୁଣ ନାରାୟଣ । ଗର୍ବଗଞ୍ଜନବାନା ତୁମ୍ଭେ ସିନା ଜାଣ ।୯୫।
ଏତେ ବୋଲି ରାଧିକା ରହିଲେ ତୁନି ହୋଇ । କାୟା ବିସ୍ତାରିଲେ
ପ୍ରଭୁ ବ୍ରହ୍ମାଣ୍ଡ ଗୋସାଇଁ । ୯୬ । ମହାଭୟଙ୍କର ରୂପ ଧରି ମହାବାହୁ ।
ଫୁତ୍କାର କରିଣ ଗର୍ଜ୍ଜନ କଲେ ସେହୁଁ । ୯୭ । ଲହ ଲହ ଜିହ୍ବା ପ୍ରଭୁ

ଦନ୍ତପାଟି ଭଙ୍ଗ । ବନକୁ ଛାଡଲେ ନାରାୟଣ ସିଂହ ରଙ୍ଗ । ୯୮ । ଘନ ଘନ ଗର୍ଜ୍ଜନ କରନ୍ତ୍ର ରୋଷଭରେ । ଆକାଶ କ୍ର ଗର୍ଜିଣ ପଡଲା ରେଷାତଲେ । ୯୯ । ଭାଙ୍ଗି ପଡ଼ ମନ୍ଦର କ ତଳକୁ ପଡଲା । ପର୍ବତ ଉପରେ କ କୁଳିଶ ବରଷିଲା । ୧୦୦ । ଯାଉ ସିନ୍ଧୁ ଏକତେ ଅଇଲା କବା ଢୋଇ । ନବଖଣ୍ଡ ମେଦିନୀ କ ପଡ଼ବ ଲେଉଟି । ୧୦୧ । ପଳାଇ ଯିବାକୁ ବାଟ ନ ପାନ୍ତି ଗୋପାଳେ । ଦଶଦିଗ ଅନ୍ଧାର ହୋଇଲା ତେତେବେଳେ । ୧୦୨ । ଗୋଡ ଥରଥର କେହୁ ନ ପାରନ୍ତି ଚଳି । ଘରେ କେହୁ ପଶିଲେ କବାଟଦ୍ୱାର କଳି । ୧୦୩ । ଥୋକାଏ ଲୁଚିଲେ ଯାଇ ବୃକ୍ଷର ପାର୍ଶ୍ୱରେ । କୁମ୍ଭରେ ପଶିଲେ କେହୁ ଯମୁନା ନଦୀତୀରେ । ୧୦୪ । ଆପଣେ ଯେ ନନ୍ଦରଜା ଉଭା ହୋଇଥିଲେ । ଶ୍ରୀକୃଷ୍ଣ ଗର୍ଜ୍ଜନ ଶୁଣି ଚମକ ପଡଲେ । ୧୦୫ । ଚହଟଡ଼ ଚନ୍ଦ୍ରାନୈଣ କେଣେ କିଛି ନାହିଁ । ପଳାଇ ଆସନ୍ତି ନନ୍ଦ ଧଡ଼ପଡ଼ ହୋଇ । ୧୦୬ । ନଜପୁରେ ପ୍ରବେଶ ହୋଇଲେ ବ୍ରଜପତି । ଯଶୋଦା ବୋଇଲେ ଏତ ବିପରୀତ ଅତି । ୧୦୭ । ରାଣୀ ଆଗେ କହନ୍ତି ବ୍ରଜନ ବଳବନ୍ତ । ମୋତେ ଖାଉଥିଲା ଯେ ନିଘଣ୍ଟ କଳାଭୂତ ଶ୍ରୀଗୁରୁ ପ୍ରସାଦେ ଯେ ଅଇଲୁ ବେଗେ ଡରି । ଜଗନ୍ନାଥ ରଖିଲେ ମଙ୍ଗଳା କଲେ ପାରି । ୧୦୯ । ଯଶୋଦା ଆଗରେ ନନ୍ଦ କହିବାର ବେଳେ । ଗୋଟିଏ ଗୋଟିଏ ଆସି ମିଳିଲେ ଗୋପାଳେ । ୧୧୦ । ଜଣେ ଜଣେ ଲୁଚିଥିଲେ ବ୍ରଜର ଗୋପାଳ । ସମସ୍ତେ ହୋଇଲେ ଯାଇ ନନ୍ଦଦ୍ୱାରେ ଠୁଳ । ୧୧୧ । ମଣ୍ଡଳ ଆକାର ହୋଇ ବସିଲେ ଗୋପାଳେ । ଗୁପତ ଭାଳେଣି ପୁଣି କଲେ ଏକାତବେଳେ ॥ ନନ୍ଦରଜା ବୋଇଲେତ ଦିଶୁ ନାହିଁ ଭଲ । ଡ଼ୟଙ୍କର ଭୂତ ଏ ଗୋପକୁ ହେଲା ଶଲ । ୧୧୩ । ବଧିକାକୁ ଖାଇଣ ବସିଲା ସ୍ଥାନ ମଣ୍ଡ । ସ୍ଥାନ ମାଡ ରହିଲା ନ ଯିବ ଆଉ ଗୁଡ । ୧୧୪ । ଉପନ୍ଦସେଣା ବୋଇଲେ ମୋତେ ଦିଶୁଛି ଏ ବୁଦ୍ଧି । ସାବଧାନେ ଗୁଣିମା ଗରୁଡ ନୃପନଧି ॥ ଅତି ଆସ୍ଥା କଲେ ଯେ ନୁହଇ କିଛି ଯଶ । ସ୍ତୁତି କଲେ ଭୂତ ଅବା ହୋଇବ ସନ୍ତୋଷ । ୧୧୬ । ନନ୍ଦରଜା ବୋଇଲେ ପଣ୍ଡର ଦୂର ଯାଉ । ରାଗ

ଗଲେ ଯିବା ତାର କୋପ ଶାନ୍ତହେଉ ॥ ସଖୀଙ୍କୁ ଚାହିଁଣ ସେ ବୋଇଲେ
ନୃପଯାଇଁ । ବିନମ୍ର ହୋଇଣ ସ୍ତୁତି କରିବାକ ଯାଇଁ । ୧୧୮ । ସ୍ତୁତି
କଲେ ଭୂତ ଅବା ହୋଇବ ସନ୍ତୋଷ । ଆଉ ଗୋଳ କରିବାରେ
ପ୍ରୟୋଜନ କିସ । ୧୧୯ । ଶୁକମୁନି କହିଲେ ପରୀକ୍ଷ ନୃପନାହା !
ରାଧା ମାଧବଙ୍କ କେଳି ପ୍ରଚାରିଲ ଯାହା । ୧୨୦ । ଏକମନ ହୋଇ ଶୁଣ
ଚିତ୍ତ ଶାନ୍ତ ହେଉ । କୋଟିଏ ଜନ୍ମର ଯେ ପାତକ କ୍ଷୟ ଯାଉ ॥
ଯେଉଁ ପାଦ ଲାଗି ମୋକ୍ଷ ପାଇଲା ଅର୍ଜୁନ । ରଙ୍ଗମା ଚରଣେ ଥାଉ
କୃଷ୍ଣର ଶରଣ । ୧୨୨ ।



ଏଣୁ ଅନନ୍ତରେ ଯେ ରୁକ୍ମିଣୀ ନୃପମଣି । ନନ୍ଦ ବସିଥିଲେ ଯେ
ଗଉଡ଼ବୃନ୍ଦ ଘେନି । ୧ । ଚନ୍ଦ୍ରସେଣା କାନ୍ଦି ଅଛି ଭୂମି ପରେ ପଡ଼ି ।
ଆହା ମୋ ପ୍ରାଣବଲ୍ଲଭୀ କେଉଁଣେ ଗଲୁ ଛାଡ଼ି । ୨ । ତିତା ପରି ସୁନ୍ଦରୀ
ଭିନପୁରେ ଦେଖା ନାହିଁ । କେତେ ବାହୁନିବି ମୋ ଶରଦଚନ୍ଦ୍ର-
ମୁହିଁ ॥ ବିପଣ୍ଣକାଳି ଅଦ୍ଭୁତ କାହୁଁ ସେ ଅଇଲା । ମୋର ପ୍ରାଣର
ବଲ୍ଲଭୀ ରାଧାକୁ ଖାଇଲା । ୪ । ନନ୍ଦରାଜା ବୋଇଲେ ଗଉଡ଼ ମୁଖ
ଚାହିଁ । ତୁମ୍ଭେମାନେ ତୁନି ହୋଇ ବସିଲ କିପାଇଁ । ୫ । ଆମ୍ଭର
ଅନେକ ଏଥି କରିବ ଅନାଚ । ବେଗେ ଯାଇ ଭୂତକୁ ସମସ୍ତେ କର
ସ୍ତୁତି । ୬ । କ୍ଷଣକ ଭିତରେ କୋପ କଲା ଅପ୍ରମିତ । ନିଶ୍ଚୟ ଜାଣିଲୁ
ଏ ମନୁଷ୍ୟଖିଆ ଭୂତ । ଗୋଳମାଳ କଲେ ଏ କରିବ ବଡ଼ ରୋଷ ।
କାତର ହୋଇଲେ ଅବା ନ ଘେନିବ ଦୋଷ । ୮ । ଏବେ ତୁମ୍ଭେ
ସମସ୍ତେହେଁ ସଜମାନ ହୁଅ । ହୀନବୀର୍ଯ୍ୟ ହୋଇଣ ଯେ ସ୍ତୁତିବାକ୍ୟ
କହ । ୯ । ତାହା ଶୁଣି ଗଉଡ଼ ଥୋଇଲେ ସବୁ ସଜ । ବଳବୀର୍ଯ୍ୟ
ଛାଡ଼ିଣ ହୋଇଲେ ହୀନ ତେଜ । ୧୦ । ପଦ୍ମରୁ ନୂପୁର ଯେ କଟିରୁ
ଡବ୍ବଘଣ୍ଟି । ହସ୍ତରୁ ପତାକାମାନ ଫୋକାଇଲେ କାଠି । ୧୧ । ହୃଦରୁ
ପଦକମାନ ପକାଇଲେ ଭାଙ୍ଗି । ସୁନା ସୁତା କାଢ଼ିଣ ପୁଣ କେ ଦେଲା
ଫିଙ୍ଗି । ୧୨ । କାହାର ଅଣ୍ଟାରୁ ରତ୍ନ ଓଢ଼ଣୀ କାଢ଼ି । ପଥରେ
ଥୋଇଣ କେ ପିଠେମ୍ଭ କେନ୍ଦୁବାଡ଼ି ॥ କର୍ଣ୍ଣର କୁଣ୍ଡଳ କେହି ପାଦେ

ମରନ୍ଧିଲେ । ଗଳାରୁ ମୁକ୍ତା କାଢ଼ି ବାଳରେ ଘୋଡ଼ିଲେ । ୧୪ ।
ଲଲାଟପଟରୁ କୋକାଢ଼ିଲେ ସୁନାଚଢ଼ା । କାଞ୍ଚମାଳି ପଲଟି ପିନ୍ଧିଲେ
ଛିଣ୍ଡାକନ୍ଥା । ୧୦ । ଦେହରେ ପାଉଁଶ ବୋଳି ସମସ୍ତ ଗୋପାଳ ।
ବାଉମାନ ପକାଇ ଫୁଲୁଲା କଲେ ବାଳ । ୧୬ । ଗୋପାଳଙ୍କ ଗହଣ
ବୋଲନ୍ତି ନରନାଥ । ସମସ୍ତେ ଭୂତଙ୍କ ଚାରୁ ଯୋଡ଼ିଥିବ ହସ୍ତ । ୧୭ ।
ଯାହାଙ୍କୁ ଯେମନ୍ତ ସ୍ତୁତି ଭେଦମୂ ବୋଲି । କରପଦ ଯୋଡ଼ି ଯାଇଁ
ଛାମୁରେ ହୋଇବ ।୧୮। ଏତେମତେ ଭୂତ ଯେବେ ଦେବ ତଡ଼ାବଡ଼ା ।
ସମସ୍ତେ ପଳାଇ ଯିବା ଗୋପନଗ୍ର ଛାଡ଼ । ୧୯ । ଏହନେକ ବଚନ
କରନ୍ତି ଯେଝାମତେ । ଚନ୍ଦ୍ରସେଣା ଉଆସକୁଁ ଚଳିଲେ ସମସ୍ତେ । ୨୦ ।
ଧୂଳ କାଖେ ହାତ ଧରି ଦନ୍ତରେ ତୃଣ । ଖଣ୍ଡିହୁଲୁ ଡାକୁଛନ୍ତି
ଭୂତଙ୍କ ଶରଣ । ୨୧ । ସିଂହର ଛାମୁକୁ ଯେହ୍ନେ ଚଳଇ ବିଲୁଆ ।
ରଖିଲେ ରଖିବେ ଏକା ସିପଣ୍ଡକାଳିଆ ।୨୨। ଗଉଡ଼ମାନେ ସମସ୍ତେ
ଏକ ମୁଖ ହୋଇ । କବାଟଦ୍ୱାରରେ ସ୍ତୁତି କରୁଛନ୍ତି ଯାଇଁ । ୨୩ ।
ଜୟ ଜୟ ଭୂତେଶ୍ୱର କର ପ୍ରତିକାର । ତୁମ୍ଭର ସଞ୍ଜୁଲ ସିନା ଏ
ଗୋପନଗର । ୨୪ । ଆମ୍ଭେ ଛାର ନ ଜାଣୁ ତୁମ୍ଭରେ କଲୁଁ ଦୋଷ ।
ସକଳ ସହସ୍ରି ନାଥ ନ କରନ୍ତୁ ରୋଷ । ୨୫। ଅନନ୍ତ କୋଟି ଜୀବ ଯା
ପାଦତଳେ ଖଟି । ଯଣକ ଭିତରେ ଧାରୁ ଛନ୍ଦପୁର ଘୋଟି । ୨୬ ।
ମହାଭଯଙ୍କର ଅଟେ ରୂପ ବିକଟାଳ । ଦେବତା ଏ ଦେଖିହେବେ ଉଯୁରେ
ଆକୁଳ । ୨୭ । ଆମ୍ଭମାନେ ଛାର ଅବା ବଣ ପଶୁଜାତି । ସେବକ
ଛାରକୁ କପାଁ ଦିଅ ଏଡ଼େ ଶାସ୍ତି । ୨୮ । କ କାମନ୍ତେ ଅଇଲ ତୁମ୍ଭର
ଘର କାହିଁ । ପ୍ରସନ୍ନ ହୋଇଣ କଥା ନ କହ କପାଁଇ । ୨୯ । ଜୟ
ଜୟ ମହାପ୍ରଭୁ କ୍ଷମା କର ଦୋଷ । କେବଣ ନଗରେ ସ୍ଥାନ ତୁମ୍ଭ
ନାମ କିସ । ୩୦ । ସମସ୍ତ ଗୋପାଳେ ଆମ୍ଭେ ପାଉଥିଲୁଁ ବ୍ୟଥା ।
ଅନୁଗ୍ରହ କରିଣ ଆମ୍ଭଙ୍କୁ କହ କଥା । ୩୧ । ଚନ୍ଦ୍ରସେଣା ଭାଦ୍ରସା
ରାଧିକା ଚନ୍ଦ୍ରମୁଖି । କେବଣ ଦୋଷରେ ତାକୁ ଖାଇଲ ଗୋସାଇଁ ॥
ଅନେକ ପ୍ରକାର କରି ମଣାଇ କହିଲେ । ପଚିଦୁଷ୍ଟା ଦେଇ କରି
ଶିରେ କର ଦେଲେ ।୩୨। କବାଟ ଦୁଆର ମାଡ଼ି କରପଦ ଯୋଡ଼ି

ଏକାବେଳେ ସର୍ବେ ପାଦତଳେ ଟଳେ ପଡ଼ି । ୩୪ । ନନ୍ଦରାଜା
ଚାହିଁଲେ କାନ୍ଧରେ ହାତ ଦେଇ । ମନେ ମନେ ସୁମରନ୍ତି ଜଗତ-
ଗୋସାଇଁ । ୩୫ । ପଛ ଅଟରେ ଯେ କହନ୍ତି ଶୁକମୁନି । ଶୁଣ ହେ
ନୃପତି ଏ ଅପୂର୍ବ ରସ ବାଣୀ । ୩୬ । ଗୋପଲେ ପଡ଼ିଲେ ଯେତେ
ବେଳେ ଧରଣୀରେ । ଶ୍ରୀକୃଷ୍ଣ ବୋଇଲେ ଯିଆ ନାହିଁ କିଣା ଥରେ ॥
ଗୋପାଳଙ୍କ ଅବସ୍ଥା ଯେ ଦେଖି ଗୋବିନ୍ଦ । ଛିଡ଼ାଇ ଲ ପ୍ରାଣ୍ୟ ନିଶ୍ୱାସ
ପଡ଼ୁଛନ୍ତି ଶୋଷ । ୩୮ । ବିଧାତା ବୋଇଲେ ହାତ ନାଗରଙ୍କ ଗୁରୁ
ଗଞ୍ଜବଗଞ୍ଜନ ପ୍ରଭୁ କ୍ଷମ ତୁ ନ କରୁ । ୩୯ । ପ୍ରସନ୍ନ ହୋଇଣ କଥା
କହ ଭୁବନସ୍ୱାମୀ । ଗୋପାଳେ ଅନେକ କଷ୍ଟ ପାଇଲେ ଗୋସାଇଁ ॥
ଶ୍ରୀଧରଙ୍କ ବଚନ ଶୁଣିଣ ଚକ୍ରଧର । କିଞ୍ଚିତେ ଦୟା ବହିଲେ
ଭକତ ସୋଦର । ୪୧ । ମୃଦୁହାସ୍ୟରେ ବୋଇଲେ ଟେକ ମୁଖ ଗୋଟି ।
କାହିଁପାଇଁ ଭୂମିପରେ ପଡ଼ିଅଛ ଲୋଟି । ୪୨ । କାହିଁପା ତୁମ୍ଭର ଆଜ
ପିଣ୍ଡିଲାରେ କଷ୍ଟ । ଅଟେ ଅଟେ ଚଢ଼ି ବନ୍ଧନ ହୋଇ ଉଠ । ୪୩ ।
ମୋର ଚରଣକୁ ରେ ସନ୍ଧିଅଛ ମୁହିଁ । ତୁମ୍ଭେ ଯେଉଁ ଦୋଷ କଲ
ଜଗତରେ ନାହିଁ । ୪୪ । ନନ୍ଦରାଜା କହିଲେ ହୋ ଉଠ ଉଠ ବେଗ ।
ହୃଦ କଥା କହିଲ ଆମ୍ଭର ବଡ଼ ଭାଗ୍ୟ । ୪୫ । ତାହା ଶୁଣି
ଗୋପାଳେ ଉଠିଲେ ଶୀଘ୍ର ହୋଇ । ବେଗେ କୃତ୍ୟ କୃତ୍ୟ ହୋଇ
ପଛ ଦୁଆ ଦେଇ । ୪୬ । ଶିରେ କର ଯୋଡ଼ିଣ ବୋଲନ୍ତି ବ୍ରଜବାସ ।
ଅବଧାନ କର ପ୍ରଭୁ କଲୁ କେଉଁ ଦୋଷ । ୪୭ । ଶ୍ରୀକୃଷ୍ଣ ବୋଇଲେ
ଯେ ଗଡ଼ାଗଡ଼ି ଦେଲ ନାହିଁ । ଯେଉଁ ଦୋଷ କଲ ତୁମ୍ଭେ କହିଦେବି
ମୁହିଁ । ୪୮ । କଦମ୍ବ ମୂଳକୁ କାଲି କେ କେ ଯାଇଥିଲ । ଶୀତଳ
ଦର୍ପଣ ମୋ ଗୋରାଇ ଆଣିଲ । ୪୯ । ଦେଖିଲାବେଳକୁ ମୁଁ ଯେ
ହୋଇଅଛି ଅନ୍ଧ । ଜୀବର ଜୀବନ ମୋର ଅମୂଲ୍ୟ ସମ୍ପଦ । ୫୦ ।
କ ଭୂତ କ ଭବିଷ୍ୟତ୍ ବର୍ତ୍ତମାନ କଥା । ତହିଁକି ଚାହିଁଲେ ଜଣା
ଯିବ ବାରତା । ୫୧ । ବୃନ୍ଦାବନ ଭିତରେ କରିଛି ନାଟ ଘର ।
ଅଫଳା କଦମ୍ବ ତଳୁ ସିଂହାସନ ମୋର । ୫୨ । ଯେଉଁ ଧନ ସୃଷ୍ଟି
ଗଢ଼ିଲାଣି ବିଶ୍ୱକର୍ମା । ସ୍ଥାବର ଜଙ୍ଗମ ଆମ୍ଭ ଗୋପନ ସୀମା । ୫୩ ।

ଶାଳଗିଲ ଉପରେ ଯେ ପର୍ବତ ମାଡୁଥା । ସବୁ ମାଠରେ କର୍ତ୍ତା ମୁହିଁ
ସେ ପଣ୍ଡ କାଳିଆ । ୫୪ । ଆକାଶକୁ ଦୃଷ୍ଟି କରି ଯୋଗ ଉଡଦେଲେ ।
ଚରାଚର ବ୍ରହ୍ମାଣ୍ଡ କମ୍ପଇ ଥରହରେ । ୫୫ । ସୁର ଯେ ଅସୁର ମୋର
କାକୁ ନାହିଁ ଶଙ୍କା । ଶ୍ମଶାନ ଭୂମିରେ ମୁହିଁ ବୁଲୁଥାଇ ଏକା । ୫୬ ।
ଯୋଗିନୀ ମନ୍ତ୍ରୀ, ଡାକିନୀ ଆଉ ପିଶାଚୁଣୀ । ଏମାନେ ଅଟନ୍ତି ମୋର
ପରିଚାରୀ ଛଉଣୀ । ୫୭ । ଏକ ପଦ୍ମଶୃଙ୍ଗେ ଯାଇ ପାରେ ସୂର୍ଣ୍ଣ ବାଟ ।
ଆମେ ପଦଛି ଥାନ୍ତି ଯେ ନର୍ମଦା ଥାଟ । ୫୮ । ମୋର ପାଦଘାତେ
ମେରୁ ପର୍ବତ କମ୍ପଇ । ଆକାଶେ ଲାଗଇ ଶିର ମୂର୍ଦ୍ଧ୍ୟବ୍ରହ୍ମେ ଯାଇ ॥
ଜମ୍ବୁଙ୍କର କାଳିଆ ଅଟଇ ମହାବଳ । ପାଠି ବିସ୍ତାରିଲେ ଛନ୍ନପୁର
ଦେବ ଚିଳ । ୬୦ । ଭ୍ରମଣ କରଇ ମୁହିଁ ଯେ ଅର୍ଦ୍ଧରାତ୍ର ଯାଏ । ଅଶୀ-
କୋଟି ଗନ୍ଧର୍ବ୍ବ ଅଟନ୍ତି ମୋର ପାଏ । ୬୧ । ଯମ ଯେ ବରୁଣ ମୋର
ଅଟନ୍ତି ପରଜା । ଖଟଲକ୍ଷ ଭୂତଙ୍କର ଅଟଇ ମୁଁ ରାଜା । ୬୨ । ଖରା
କାକରକୁ ମୋର ନାହିଁ କିଛି ଭୀତ । ଲୋମମୂଳେ ଲାଗି ରହିଥାଏ
ବଜ୍ରନଦୀ । ୬୩ । ସକଳ ରାକ୍ଷସ ଖାଏ ଜୀଳରନ ଅଗ୍ନିରେ । ପବନକୁ
ଆଣି ମୁହିଁ ଚରଣେ ବାନ୍ଧିପାରେ । ୬୪ । ଇନ୍ଦ୍ର, ଚନ୍ଦ୍ର, ବରୁଣ ମୁହିଁ
ସମସ୍ତଙ୍କ ପିତା । ତୁମ୍ଭେମାନେ ଗଉଡ଼ ନ ଜାଣି ହେଲ ମତ୍ତା । ୬୫ ।
ନବଖଣ୍ଡ ମେଦିନୀ ଜଂଘରେ ପାରେ ଚାପି । ହସ୍ତ ବଢ଼ାଇଲେ ମୁହିଁ
ସୂର୍ଯ୍ୟଙ୍କୁ ପାରେ ଧରି । ୬୬ । ଚଉଷଠୀ ଗଙ୍ଗା ଅଛି ମୋର ଧଦଭଲ ।
ଚାଷ୍ଟ କରିପାରେ ମହୀ ସପ୍ତସିନ୍ଧୁ ଜଳ । ୬୭ । ମୋର କୋପ କଲେ
ତେବେ ପୃଥ୍ୱୀ କାହିଁ ଥିବ । ନାସିକା ପବନ ଘେନି ମେରୁ ଉଡ଼ିଯିବ ॥
ଖୋଳ ଖୋଲ ପରମାଣୁ ଅଟେ ମୋର ପେଟ । କେତେକ ବ୍ରହ୍ମାଣ୍ଡ
ରହିପାରେ ସାତ ଆଠ । ୬୯ । ଏହ୍ରପଣି ସମସ୍ତଙ୍କୁ ଗାଳିଦେବ ଧରି ।
ତୁମ୍ଭେ ଶୁଣ ମୋ ଦର୍ପଣ ଆଣ ଶୋଧି କରି । ୭୦ । ଉପଦ୍ରବ ଶତ୍ରୁ
ତେବେ ମୋର ଥାଅନ୍ତି ସାଙ୍ଗେ । ଯନ୍ତ୍ରିଙ୍କ ଗୃହରେ ମୁହିଁ କରଇ
ଧଡ଼କିଡ଼ି । ୭୧ । କୃଷ୍ଣ ଯେ ସାଧକମାନେ ନ ପାଆନ୍ତି ଯାହା । କ୍ଷୁଧା
ତୃଷା ନ ଲାଗଇ ଦେଖୁଥିଲେ ତାହା । ୭୨ । କେତେବେଳେ କେଉଁ
କଥା ଘଟିଯିବ ବୋଲି । ଯତ୍ନରେ କଦମ୍ବମୂଳେ ଥୋଇକରି ଗଲି ॥

ଥୋଇକରି ଭ୍ରମି ସେ ସମିଧେ ଗଲି ମୁହିଁ । ଆସି ଦେଖିଲାବେଳକୁ
ସେଠାବରେ ନାହିଁ । ୭୪ । ଦର୍ପଣ ନ ପାଇ ସେ ମନରେ କୋପ
କଲା । ସେଥିପାଇଁ ବଧିକାକୁ ମାରି ପକାଇଲା । ୭୫ । ଯହିଁପାଇଁ
ଯେତେ କଲ ତାହା କି କହିବି । ଆମ୍ଭ ଦ୍ରବ୍ୟ ଦେଲେ ତୁମ୍ଭ ବଧିକାକୁ
ଦେବୁ । ୭୬ । ନନ୍ଦରଜା ବୋଲନ୍ତି ସେ ଶୁଣ ଭୂତେଶ୍ୱର । ମଲା
ମନୁଷ୍ୟଙ୍କୁ କେଲେ କି ହେବ ଅମର । ୭୭ । ତାହା ଶୁଣି ବୋଲନ୍ତି
ସେ ଦେବ ଚକ୍ରଧର । ମାରି ତାରି ପାରଇ ଏମନ୍ତ ବାନା ମୋର ॥
ଦନ୍ତଘାତ ପାଇ ମୂର୍ଚ୍ଛା ଯାଇଛି ମୃଗାକ୍ଷୀ । ଚକଡ ଖାଇଲୁଁ ସେ
ନିଶ୍ୱାସ ବନ୍ଧୁଅଛି । ୭୯ । ଫୁଲ ପାଣି ମନ୍ତ୍ରି କରି ସିଞ୍ଚିଦେବା ମୁଖେ ।
ଝାଳମନ୍ତ୍ର ପଢ଼ିଲେ ଉଠିବ ଇଚ୍ଛା ସୁଖେ । ୮୦ । ଏବେ ତୁମ୍ଭେ
ବଧିକାକୁ ଏହିକ୍ଷଣି ନିଅ । ଅମୂଲ୍ୟ ଦର୍ପଣ ମୋତେ ବେଗେଆଣି ଦିଅ ।
ଏହା ଯେବେ ତୁମ୍ଭେମାନେ ନ କରିବ ଜାଣ । ଆକାଶର ଚନ୍ଦ୍ର ଦିଅ
କରିବ ଦର୍ପଣ । ୮୨ । ମନକୁ ନଇଲେ ହେବ ଦଣ୍ଡ ଦଇବର ।
କ୍ଷଣକ ଭିତରେ ଚୂନା ହେବ ଘରଦ୍ୱାର । ୮୩ । ବିଳମ୍ବ ନ କରିଣ
ବହନ ଆଣି ଦିଅ । ଆମ୍ଭେ ଚଳି ଯାଉଅଛୁଁ ବଧିକାକୁ ନିଅ । ୮୪ ।
ଏହା ଶୁଣି ଗଉଡ଼େ ପାଇଲେ ମନେ ବ୍ୟଥା । ଏକକୁ ଅନେକ ଆଉ
ନ କହନ୍ତି କଥା ॥ ଗୋପାଳଙ୍କୁ ଚାହିଁଣ ବୋଲନ୍ତି ରାଜା ନନ୍ଦ ।
ଅକାଳକାଳରୁ କାହ୍ନୁ ମାଡୁଥାଇ ଗନ୍ଧ । ୮୬ । ବାଳୁତ କୁମର ବୋଲି
ଭଣାରେ ଭୁଲାଉ । ଭୂତ ଏବେ ମାଗୁଅଛି ପାଇବା ତା କାହିଁ ॥
ଚନ୍ଦ୍ରହେଣା ବୋଇଲେ ଶୁଣିମା ବ୍ରଜରାଜା । ସତେହେଁ କି ବଳୁଥିବ
ମୋହର ଭଣଜା । ୮୮ । ତୁମ୍ଭ ପ୍ରସାଦେ ଯେବେ ଥିବ ନବବାଳୀ ।
ଦୁର୍ଗାଙ୍କ ଆଗରେ ଦେବ ସହସ୍ରେକ ବଳି । ୮୯ । ଶତେ ମାଢ଼ ସୁବର୍ଣ୍ଣ
ଦେବଇଁ କରି ଦାନ । ଗ୍ରହଶାନ୍ତି କରିଣ ତୋଷିବି ଦ୍ୱିଜଜନ । ୯୦ ।
ଚଣ୍ଡିଶାନ୍ତି ହୋଇବ ଛାଡ଼ିବ ମନୁ ପାପ । ବୈଷ୍ଣବ ଗୋଷ୍ଠୀରେ ମୁଁ
ଛଡ଼ାଇବି ପାପ । ୯୧ । ଜଗନ୍ନାଥଙ୍କ ଚରଣେ ନୈବେଦ୍ୟ ଥିବ ଖଟି ।
କାର୍ତ୍ତିକବ୍ରତ ଓଷା ଯେ କରିବି କୋଟି କୋଟି । ୯୨ । ସହସ୍ରେ ଦୁହାଁଳ
ଗାଈ ଦେବି ଦ୍ୱିଜ ଆଳି । ଗୋଟେ ସ୍ନାନ କରି ମୁଣ୍ଡାଇବି ବାଳ ॥

ବାଛି ବୃନ୍ଦ ସବୁତେ ବିପ୍ରଙ୍କୁ ଦାନ ଦେବ । ରାଧିକାଙ୍କ ଚରଣ ପଛେ ଯୋଗୀ ହୋଇ ଯିବ ॥ ନୋହିଲେ କାଳିନ୍ଦୀଜଳେ ଝାସ ଦେବ ଯାଇଁ । ତୁମ୍ଭେ ମୋର ଭଉଣୀର କହିଲ ତୁମ୍ଭ ତହିଁ । ୯୫ । ନନ୍ଦରାଜା ବୋଇଲେ ନୁହ ହେ ବାବୁ ଛନ୍ନ । ଲକ୍ଷିଲେ ରକ୍ଷିବେ ପ୍ରଭୁ ଆରତ ଭଞ୍ଜନ । ୯୬ । ସୁଖ ହେଲା ବୁଡ଼ାଇ ତୁ ହୋଇଛୁ କାତରେଖ । ଦୁର୍ଗା-ପାଠ କରିବେ ମଙ୍ଗଳା ହେବେ ପକ୍ଷ । ୯୭ । ଦ୍ୟୂତମୁଖୁଁ ଶୁଣିଲୁଁ ଯେବଣ କଥାମାନ କେତେଁ ଜାଣିଲୁଁ ବଞ୍ଚିବ କେତେଶାସ୍ତ୍ର ରଚନ । ୯୮ । ଜଗନ୍ନାଥ ମହାପ୍ରଭୁ ଲେଖିଥିବେ ଯେବେ । ସମସ୍ତ ବିଚାର କାର କି କରିବା ଆମ୍ଭେ । ୯୯ । କେ ତାହା ଦର୍ପଣ ନେଲା ହେଲା ପରମାଦ । ଦଇବ ଅମ୍ଭଙ୍କୁ ଆସି ଲଗାଇଲା ବାଦ ॥ କହ ନ ସରଇ ଯେ ଦ୍ୟୂତର ଯେତେ ଛିଦ୍ର । ଅଧିକଲ ମାଗର ଆକାଶ ଚନ୍ଦ୍ର ଗୋଟା । ୧୦୧ । ବଳିଷ୍ଠ ପଣରେ ଅଟେ ବୀର ଶିରୋମଣି । କୌଣସି ପ୍ରକାରେ ଦ୍ୟୂତକୁ ଯେ ନୁହେ ଜିଣି । ୧୦୨ । ଦଇବ ଦୁର୍ଯୋଗେ ଆସି ପଡ଼ିଲା ସନ୍ଦେହ । କାହାର କି ବୁଦ୍ଧି ଅଛୁ ବିଚାରିଣ କହ । ୧୦୩ । ଚନ୍ଦ୍ରସେଣା ବୋଇଲା ଗୋପାଳବୃନ୍ଦେ ଶୁଣ । ମୋହର ବୁଦ୍ଧି ଏ ଅଛି ଶୁଣନ୍ତୁ ଗୋପାଳେ । ତୁଚ୍ଛାକୁ ଆମ୍ଭେ ସମସ୍ତେ ହୋଇଲୁ ଯେ ଗେହ୍ଲର । ଆକାଶର ଚନ୍ଦ୍ର ଦେବା ସନମତ କର । ୧୦୪ । ସେ ଯେବେ ରାଧାଙ୍କୁ ଅଣି ଦେବ ଆମ୍ଭ କୋଟେଲ । ପଛେ ଆନ ବିଚାର କରିବା ତେତେତେବେଳେ । ୧୦୫ । ଧନ ଚହ୍ନୁ ଦେଇ ତାକୁ ପ୍ରତିବୋଧ କରିବା । ଦିନା ଗ୍ୟର ପାଞ୍ଚ ହେଲେ ରୁହାଇଣ ଥିବା । ୧୦୭ । ଏତେମତେ ଦ୍ୟୂତ ଯେବେ ଦେବ ତଡ଼ିବଡ଼ି । ଗୋପ ନଗ୍ର ସୀମା ପଛେ ପଳାଇବା ଶୁଣ ॥ ନନ୍ଦରାଜା ବୋଇଲେ ହୋ ଚନ୍ଦ୍ରସେଣା ଭାଇ । ଆପଣାର ଆରତ କି ପରଠାରେ ଥାଇ । ୧୦୯ । ରାଧିକା ପଡ଼ିଲା କୁତ ହୋଇଲୁ କାତର । କାହାପାଇଁ କେ ଅବା ଛାଡ଼ିବ ଘରଦ୍ୱାର । ୧୧୦ । ଏ ଗୋପ ନଗରେ ବାବୁ ଘର ନାହିଁ କେତେ । ଅକାଳ ଚଡ଼କ ଏକ ପଡ଼ିଛି ତୋ ମାଥେ । ୧୧୧ । ଆକୁଳ ହୋଇଣ ବାବୁ ବୋଲୁ ପେଉଁ ବାଣୀ । ମିଛକଥା କହିଲେ ଦ୍ୟୂତକୁ ନୋହେ ଜିଣି । ୧୧୨ । ଧନ ଚହ୍ନୁ ଦେଇ ଅବା ପାଦହିଁ

ଧରିବା । ଖଣକେ ଚଳିଲେ ବାବୁ ସମସ୍ତେ ମରିବା । ୧୧୪ । ତୁମ୍ଭେ-
ମାନେ ଚଉଡ଼ ହେ କିଛହିଁ ନ ଜାଣ । ଆମ୍ଭର ବୁଦ୍ଧିଏ ଅଛି କହିବା
ତା ଶୁଣ । ୧୧୫ । ଯାହାକୁ ଯେମନ୍ତ ରୂପେ ମିଳିବ ସେ ବଳି ।
ଉପନ ଗୋଟିଏ ବାବୁ ଆଣ ବେଗ କରି । ୧୧୬ । ଷଡ଼ରସ ବ୍ୟଞ୍ଜନ
ଅମୃତ ରସ ଦେଇ । ପାନ୍ତେ ପଡ଼ି ଶୋଇବା ଭୂମିରେ ଲମ୍ବ ହୋଇ ॥
ଭୂତ ପ୍ରେତ ଇତ୍ୟାଦି ଯେତେକ ପିଶାଚୁଣୀ । ଖାଇବାର ଅର୍ଥେ ଦିନା
ଲାଗିଥାନ୍ତି ପୁଣି ॥ ବରଷକ ଭୋଗ ଯେ ଏନକେ ଭିଆଇବା । ଯେତେ
କଲାଗାଇ ସବୁ ସଜାଡ଼ିଣ ଦେବା । ୧୧୮ । ଏମନ୍ତ ବୋଲନ୍ତି ଯେତେ
ଗୋପନଗ୍ର ବାସୀ । ଏକଠାବ ହୋଇଣ ଯେ ଭାକୁଛନ୍ତି ବସି । ୧୧୯ ।
ଗୋପାଳଙ୍କ ବିଚାର କରିବା ଦେଖି ଏଣେ । ହିପତ୍ର କାଳିଆ ଭୂତ
ଡ଼ାକ ଦେଲା ତେଣେ ଆରେ ଆରେ ଗଉଡ଼ ତୁମ୍ଭେ ନାହିଁ ଜ୍ଞାନ ।
ଏହା ଶୁଣି ଗଉଡ଼ କମ୍ପନ୍ତି ଥର ହର ॥ ଶତଟା ଚନ୍ଦ୍ର ଦର୍ପଣ ଅଣିଛ
ଗୋରାଇ । ଏକ ଚନ୍ଦ୍ର ମାଗିଲେଟିରେ ନ ଦେଅ ବାମ୍ପାଇ । ୧୨୨ ।
ଦେବ କି ନ ଦେବ ଶୁଣି ଛୁଟିବା ସନ୍ଦେହ । ନୋହିଲେ କି କଥା
ଅଛି ବିସ୍ତାରିଣ କହ ।୧୨୩। ନନ୍ଦରାଜା କିବେ ଇଲେ ଶୁଣିମା ଭୂତେଶ୍ୱର ।
ଅରକ୍ଷିତ ଲୋକଙ୍କୁ ଏଥିରୁ ରକ୍ଷା କର । ୧୨୪ । ଦର୍ପଣ ହଜିଲା ବୋଲି
କାଲୁ ଅମ୍ଭେ ଦୋଷ । ସକଳ ସହିଣି ନାଥ ନ କରନ୍ତି ରୋଷ ।୧୨୫।
ସେବକର ସେବକ ଭୃତ୍ୟର ଭୃତ୍ୟ ହୋଇ । ଜୀବ ଥିବାଯାଏ ଅମ୍ଭେ
ଖଟିବୁ ଗୋସାଇଁ ॥ ଦେବା ନେବାରେ ତୁମ୍ଭଙ୍କୁ ନୋହୁ ଯେ କୁଣ୍ଠିତ ।
ତୁମ୍ଭର ତୁଟିଲା ଏହି ଗୋପନଗ୍ର ସତ । ୧୨୭ । ଆନ କିଛି ଦେବାକୁ
ନ ହେବୁଁ ଭାଜନ । ବାରମାସୀ ତୁମ୍ଭ ପୂଜା କରିବୁ ଭିଆଣ । ୧୨୮ ।
ଯାହା ତାହା କରିଣ ସକଳ ସଞ୍ଚା ଦେବୁଁ । ବାଞ୍ଛିତ ଭକତିଭାବେ
ସେବା କରୁଥିବୁଁ । ୧୨୯ । ନନ୍ଦରାଜା ମୁଖରୁ ଏମନ୍ତ ବାଣୀ ଶୁଣି ।
ହସ ହସ ହୋଇ ଭୂତ କହିଲା ଯେ ପୁଣି । ୧୩୦ । ଗଉଡ଼ ବାଉଡ଼
ହାଉଡ଼ ଯେ ଜାତି ତୁମ୍ଭେ । ବେଳହିଁ ନ ଯତ ବୋଲି ନ ଜାଣୁ ତା
ଅମ୍ଭେ ॥ ଯେତେ ଦୋଷ କଲେ ତୁମ୍ଭ ଅପଦ ଖଣ୍ଡିବା । ସେବକ
ଲୋକଙ୍କୁ କେତେବେଳେ କି ଦଣ୍ଡିବା । ୧୩୨ । ଏବେ ତୁମ୍ଭେ

ଗନ୍ତବ୍ୟେ ବହନ ଯାଅ ଚଳି । ଭୋଗ ବେଗେ ଆଣ ଯେ କରିବା
ଭୂତକେଳି । ୧୩୫ । ଗୋପାଳ ବୋଇଲେ ପ୍ରଭୁ ସାବଧାନ ହୁଅ ।
ଭୋଗ ଆଣି ଦେବୁଁ ଆମ୍ଭ ସେବକାଙ୍କୁ ଦିଅ । ୧୩୪ । ଭୂତ ବୋଲେ
ମୃତ୍ୟୁସଞ୍ଜୀବନୀ ମନ୍ତ୍ର ଫୁଙ୍କି । ମଲା ମନୁଷ୍ୟଙ୍କୁ ଅଛି ଜୀଆଇବା ଠିକ ॥
ଚଣ୍ଡୀ ଯେ ଚାମୁଣ୍ଡା ସବୁ ମୋର ପରିବାର । ବାଣ୍ଟି ଛନ୍ତୁ ସେବକାଙ୍କୁ
ଶତ ଭାଗ କରି ॥ ଶୀତଳ ମନୋହର ପିନା ସେମାନଙ୍କୁ ଦେବା । କଥାଏ
କଥାଏ କହି ତାହାଙ୍କୁ ବୋଧିବା । ୧୩୭ । ଏବେ ଯାଅ ସମସ୍ତେ
ବିଧାଙ୍କୁ ଥାଅ ମୂର୍ଚ୍ଛି । ତିନ ଦିନ ଯାଏ ତୁମ୍ଭେ ନ କହିବ କିଛି ।୧୩୮।
ଅପୂର୍ବ ପଦାର୍ଥ ଯେତେ ଥିବ ଉପହାର । ଆଣି ମହି ଅଗଣାରେ ସବୁ
ଠୁଳକର ।୧୩୯। ସମସ୍ତ ପଦାର୍ଥମାନ ଏକାଠି ଥୋଇବ । ଦିଗ ପାଶେ
ଗେ ଠିଏ ଯେ କେହି ନ ରହିବ । ୧୪୦। ମହାବଳେ ଭ୍ରମଣ କରିବୁଁ
ନିଶାରାତ୍ର । ଶୁମ୍ଭରେ ପଡିଲେ କେହି ନ ଯିବନ୍ତି ବର୍ତ୍ତି । ୧୪୧ ।
ଶତଲକ୍ଷ ଭୂତ ଯେ ପଞ୍ଚାଶ କୋଟି ଚଣ୍ଡୀ । ଠହ ଠହ ସିନ୍ଦୂରେ ବହନ
ମୁଖ ମଣ୍ଡି । ୧୪୨ । ଅଶୀକୋଟି ପିଶାଚୁଣୀ ସହସ୍ରେ ଚାମୁଣ୍ଡା । ଏକ
କରେ ଖପର ଆରେକ କରେ ଖଣ୍ଡା । ୧୪୩ । ଏମାନଙ୍କୁ ଶୀତଳ
ମନୋହର ସଞ୍ଚା ଦେବ । ଚିନାଚିନ ଦରେ ସେବକାଙ୍କୁ ବଞ୍ଚାଇବ ।୧୪୪।
ନନ୍ଦରାଜା ବୋଇଲେ ଯେବଣ ଆଜ୍ଞା ଦେଲ । ତୁମ୍ଭଙ୍କୁ ଯେ ଯୋଗାଇବ
ଆମ୍ଭଙ୍କୁ ସେ ଭଲ । ଭୂତ ବୋଲେ ନଗର ଯେ ପବିତ୍ର ମାଡୁଅ ।
ସବୁଠାରେ କର୍ତ୍ତା ମୁହିଁ ନିପଣ୍ଡ କାଳିଅ । ୧୪୬ । ଆମ୍ଭର ପ୍ରସାଦେ
କାହିଁକି ଯେ ତୁମ୍ଭେ ଯିବ । ଗୋପନଗ୍ର ଲୋକ ତୁମ୍ଭେ ନିଶ୍ଚିନ୍ତରେ
ଥିବ । ୧୪୭ । ଏବେ ତୁମ୍ଭେ ସମସ୍ତେ ଘରକୁ ଚଳିଯାଅ । ଉପହାର
ଦ୍ରବ୍ୟ ଆଣି ବେଗ କରିଦିଅ । ୧୪୮ । ଏହା ଶୁଣି ବାହାର ହୋଇଲେ
ଗୋପବୃନ୍ଦ । ଆସ ଅସ ବୋଲି ଆଗେ କରାଇଲେ ନନ୍ଦ । ୧୪୯ ।
ଚନ୍ଦ୍ରସେଣୀ ଡିଆସନ୍ତୁ ବେଢେ ଟଳେ ଚଳି । ଯେଝାର ଇଚ୍ଛାରେ ଯେ
କରନ୍ତୁ ଭୂତକେଳି ॥ ଲକ୍ଷେଭାର ଲବଣୀ ବ୍ୟଞ୍ଜନ ଭଜା ବଣ୍ଟା ।
ଲକ୍ଷେଭାର ଅମୃତ ମନୋହର ଦିବ୍ୟପିଠା । ୧୫୧ । ଖଣ୍ଡୁପାଙ୍କ ନବାତ
ଦୋଗାଡ଼ି ଲକ୍ଷେ ଭାର । ଲକ୍ଷେଭାର ଦୁଧ ଛେନା ସର ଲକ୍ଷ ଭାର ॥

ପାଞ୍ଚଲକ୍ଷ ଭାର ଯେ ଗୋପାଳମାନେ ଘେନ । ସବୁ ସଞ୍ଜା ଯୋଗାଡ଼ ଭିଆଇଲେ ସଇନ । ୧୫୩। ଚନ୍ଦନ କସ୍ତୁରୀ ଭାର କେ କରିବ ମୂଲ୍ୟ । ଅଶୀ ଭାର କର୍ପୂର ଚମ୍ପାଶୀ ଭାର ଫୁଲ । ୧୫୪ । ସୁନାବେଣ୍ଟ ଶ୍ୟାମର ଯେ ଅପୂର୍ବ ଅଳଙ୍କ । ଘରେ ଘରେ ଭିଆଇଲେ ଷୋଳସସ୍ତ୍ର ଖଣ୍ଡ ॥ ଅପୂର୍ବ ବିଞ୍ଚଣୀ ଯେ ଶୁଦ୍ଧଆସନ କରି । ଉଦଣ୍ଡ ଅଳଙ୍କ ପାଟଛସମାନ ଧରି । ୧୫୬ । ଗୋପକ୍ରୀଡ଼ା ରସ ଏ ଅପୂର୍ବ ଭୂତକେଳି । ଅନ୍ୟ କରି ନ ପାରିଲେ ଯାହା ବ୍ରହ୍ମା ଶୂଳୀ । ୧୫୭ । ମାନବ ହୋଇଣ ମୁଁ ତା ଜାଣିବଇଁ କାହୁଁ । ବେଦରେ ବାତୁଳ ମୁଁ ଯେ ଅଜ୍ଞାନ ଅଟଇ । ପାଠ ଶାଠ ନ ଜାଣଇ ମୂର୍ଖମତି ସିନା । ଜଗନ୍ନାଥ ଦୟାକଲେ ପୂର୍ବର ବାସନା । ୧୫୯। ଦୀନବନ୍ଧୁ ଦୟାରୁ ଯେ କରଇ ପ୍ରକାଶ । ଭୂତକେଳି ଚରିତ କହଇ କୃଷ୍ଣ ଦାସ । ୧୬୦ ।

ଏଥୁଅନନ୍ତରେ ଯେ ଶୁଣିମା ଦିବ୍ୟଗୀତ । ପୁଣ ପରୀକ୍ଷିତେ ଯେ କହନ୍ତି ଶୁକଯତି । ୧ । ଉପହାର ସଜାଡ଼ି ବରଜ ସଇନ । ଚଳିଗଲେ ଗୋପାଳେ ଯେ କାନ୍ଧେ ଭାର ଘେନ । ୨ । ଆଗରେ କଡାରି ଯେ ଅଛନ୍ତି ଚନ୍ଦ୍ରସେଣ । ଦୁଇ କ୍ରୋଶ ପର୍ଯ୍ୟନ୍ତ ଲାଗିଛି ଭାଗ୍ୟମାନ । ୩ । ଏମନ୍ତେ ଭୂତ ନିକଟେ ହେଲେ ପରବେଶ । ଭାରି ତଳେ ଥୋଇ ଓଲଗିଲେ ବ୍ରଜଶିଷ୍ୟ । ୪ । ଭିତର ଅଗଣା କୋଠା ପିଣ୍ଡା ହେଲା ଘଞ୍ଜା । ଉଆସଙ୍କ ଲଗାଇ ଥୋଇଲେ ସବୁ ପଞ୍ଜା । ୫ । ନନ୍ଦରାଜା ବୋଇଲେ ଶୁଣମା ଭୂତମଣି । ତିନଦିବସକୁ ଭୋଗ ଭିଆଇଲୁ ଆଣି ॥ ପରିବାର ଘେନାଣ କ୍ରୀଡ଼ାରେ ପ୍ରଭୁ ତୁମ୍ଭେ । ଥାଅ ଏବେ ଆଜ୍ଞା ଦେଲେ ଚଳିଯିବୁଁ ଆମ୍ଭେ । ୭ । ଶ୍ରୀକୃଷ୍ଣ ବୋଇଲେ ତୁମ୍ଭେ ସମସ୍ତେ ତହୁଁ ଯିବ । ତିନଦିନ ପରେ ଯାଇଁ ବାଳଙ୍କୁ ଯେ ନେବ । ୮ । ଆଜ୍ଞାପାଇ ଚଳିଲେ ଆନନ୍ଦଚିତ୍ତ ହୋଇ । କାଖେ ହସ୍ତଦେଇ ଗଲେ ପଛଦୃଷ୍ଟି ଦେଇ । ୯ । ଉପହାର ଦ୍ରବ୍ୟ ପାଇ ବ୍ରଜସୁନ୍ଦର । ଜୟ ଜୟ ଧ୍ୱନି କଲେ ଅଭୟଙ୍କର । ୧୦ । ଯେ ଯାହାର ମନ୍ଦିରେ ଗୋପାଳେ ଯାଇଁ ମିଳି । କୃଷ୍ଣ ମୁଖ ଶୁଦ୍ଧିଣ ବୋଲନ୍ତି ନବବାଳୀ । ୧୧ ।

ରାଧିକା ବୋଇଲେ ଏବେ କି ବୁଦ୍ଧି କରିବା । ତୁମ୍ଭର ବୁଦ୍ଧିରେ ପ୍ରଭୁ ନଷ୍ଟ ମରିବା । ୧୨ । ଏତେ ଦ୍ରବ୍ୟମାନ ତୁମ୍ଭେ ଅଣାଇଲ ହରି । ଦୁଷ୍ଟବୁଦ୍ଧି ନନ୍ଦରେ ଜାଣିଲେ ନଷ୍ଟ ମାରି । ୧୩ । ସଙ୍ଗତରେ କେହି ନାହିଁ କାହାକୁ ଯେ ଦେବୁ । ଏହା କେ ଖାଇବ ନାଥ କି ବୁଦ୍ଧି କରିବୁ । ୧୪ । କି କୂଟ କପଟ ତୋର ଜଣାପାଉ ନାହିଁ । ଆଉ କେଉଁ କଉତୁକ ଭିଆଇବୁ ରହି । ୧୫ । ଶ୍ରୀକୃଷ୍ଣ ବୋଇଲେ ସଖି ହୋଇଲୁ କି ବାଇ । ହସ୍ତର ମାଣିକ୍ୟ କି ପରକୁ ଯାଚ ଦେଇ । ୧୬। ଖାଇବାର ପଦାର୍ଥ କାହାକୁ ଆମ୍ଭେ ଦେବୁ । ତୋତେ ମୋତେ ଦୁହିଁଙ୍କି ଗୋ ନ ଅଣ୍ଟିବ ସବୁ ।୧୭। ଏଥକୁ ଗୋ ଭ୍ରାନ୍ତ ତୁ ନକର ବନମାଳୀ । ଦେଖୁ ଦେଖୁ ଅଟକିକି ମୁଁ ଦେଇପାରେ ଗିଳି । ୧୮ । ରାଧିକା ବୋଇଲେ ପ୍ରଭୁ ଯଶୋଦାକୁମର । କେମନ୍ତେ ଖାଇବ ନାଥ ମୋତେ ଅଗୋଚର । ୧୯ । ପର୍ବତ ଆକାର ହୋଇ ପଡ଼ିଅଛି ଯହିଁ । ଦୁହେଁ ଜଣଙ୍କରେ କେତେ ଖାଇବା ଗୋସାଇଁ । ୨୦ । ତାହା ଶୁଣି ରାଧାକୁ ବୋଲନ୍ତି ପଦ୍ମଆଖି । ଗରବ ଗଞ୍ଜନ ବାନା ଜାଣୁ କି ନା ସଖି । ୨୧ । ଏ ସ୍ତୁର କଥାକୁ କିପାଁ ଡ଼ରୁ ଗୋ ସୁନ୍ଦରି । ଅଶେଷ ବ୍ରହ୍ମାଣ୍ଡ ମୋ ଗର୍ଭରେ ଅଛି ପୂରି । ୨୨ । ରାଧିକା ବୋଇଲେ ତୁମ୍ଭେ ମଦନମୋହନ । ମିଛକଥା କହିଲେ କି ପ୍ରତେ ଯିବ ମନ । ୨୩ । ଏକ ଘର ମଧ୍ୟରେ ରହିଛ ବଂଶୀଧର । ଅଶେଷ ବ୍ରହ୍ମାଣ୍ଡ ତୁମ୍ଭେ ରଖିଲ କାହିଁର । ୨୪ । ମୁରଲୀ ଗୋଟିଏ ଧରି ବାଉଥାଅ ଠାଣି । ଗୋପିଙ୍କି ଭଣ୍ଡିଲ ପ୍ରାୟେ ମୋତେ ଅଛ ଜାଣି । ୨୫ । ହସାଇ ରସାଇ ତାଙ୍କୁ କହୁଥାଅ ଯେତେ । ମାୟାଧର ପୁରୁଷ ଯେ ମିଛୁଅଟି ସତେ । ୨୬ । ଗୋପାଳଙ୍କୁ ଭଣ୍ଡିଲ ଯେ ଘାଟପଣ କରି । ମିଛେହେଁ ବୋଇଲ ମୁଁ ସୂର୍ଯ୍ୟଙ୍କୁ ହାତରେ ଧରି । ୨୭ । ଭୟ ପାଇ ଗଉଡ଼େ ତୁମ୍ଭଙ୍କୁ କଲେ ସେବା । ସେହିପରି କରିଣ ଯେ ମୋତେ ଭଣ୍ଡ ଅବା ॥ କେମନ୍ତ ପ୍ରକାରେ ମୋତେ ଭଣ୍ଡିବ ଯେ ନାହିଁ । ତୁମ୍ଭଠାରୁ ଭରୁଛି ଅଟଇ ପ୍ରଭୁ ମୁହିଁ । ୨୯ । ନଖ ମୁଖ ନାସିକା କୋମଳ ଭୁଜ ଦଣ୍ଡ । ତୁମ୍ଭେ କେମନ୍ତ କହୁଛ ଅଶେଷ ବ୍ରହ୍ମାଣ୍ଡ । ୩୦ । ବାଞ୍ଛିତ କୁମର

ତୁମ୍ଭେ ବ୍ୟବହାରେ ଦ୍ୱନ୍ଦୀ । ବାଳକୁ ଅ ମାଇଲେ ଘରକୁ ଯାଅ କାନ୍ଦି ॥
ଜନ୍ମ ହୋଇ ନୁଅନ୍ତି ଯେ ତଣ୍ଡି କେଡ଼ ମନ । କାଳ ପ୍ରାପ୍ତ ମରଇ
ତୁମ୍ଭ ଜନ୍ମଧନ । ୩୨ । କୋଳରେ ବସାଇ ଯେ ଝୁଆଇଁ ଦୁଧଗୋଟି ।
ଲୁଚାଇବି ନ ଆସେ ତୁମ୍ଭଙ୍କ ପଣ୍ଟାଠି । ୩୩ । ଶେଷ ହୋଇଅଛି
ତୁମ୍ଭଦେହ ଗୋଟି ଯହିଁ । ଅଶେଷ ବ୍ରହ୍ମାଣ୍ଡ ଭାଣ୍ଡ ସଞ୍ଚରନ୍ତି କାହିଁ ॥
ଶ୍ରୀକୃଷ୍ଣ ବୋଇଲେ ରାଧା ନ ଜାଣୁ ତୋ କନ୍ଥ । କୋଟିଏ ବ୍ରହ୍ମାଣ୍ଡ
ମୋ ଗର୍ଭରେ ଲୁଚିଅଛୁ । ୩୫ । ଦେଖ ମଣି ରମଣି ଗୋ ନ ହୁଅ
ବିମୁଖ । ପାଟି ବିସ୍ତାରିଣ ଦେବ ପ୍ରତ୍ୟକ୍ଷରେ ଦେଖ । ୩୬ । ନାହଲ
ନନ୍ଦନେ ତୁ ଗୋ ଗର୍ବୀ ସଙ୍ଗାତୁଣି । ସତ ମିଛ ହୋଇଲେ ବୁଝିବୁ
ଏହିକ୍ଷଣି । ୩୭ । ଆମ୍ଭର ବଚନ ଯେବେ କଲୁ ଅପତେତ । ଗରବ
ଗଞ୍ଜନ ଦୋଷା ଦେଖାଇବି ତେତେ । ୩୮ । ରାଧିକା ବୋଇଲେ
ପ୍ରଭୁ ଯେବେ ମୋର ସେବା । ମୁଖ ବିସ୍ତାରି ଧଅ କି ଦେଖାଇ ଅବା ॥
ଦେଖିଲେ ମୁଁ ପ୍ରତେ ଯିବି ଗୁଣ ନନ୍ଦବାଳା । ସତ ଯେ ଶୁଣିଲ ପ୍ରଭୁ
ମିଛ ଅଟଇ କଳା । ୪୦ । ଏହା ଶୁଣି ହରଷ ହୋଇଲେ ଜଗନ୍ନାଥେ ।
ପାଟି ବିସ୍ତାରିଲେ ପ୍ରଭୁ ସ୍ୱର୍ଗପୁର ଯାଏ । ୪୧ । ମର୍ତ୍ତ୍ୟପୁର ସହିତେ
ପାତାଳପୁର ଯୋଡ଼ି । ଏତେ କହି ବୋଇଲେ ତୁ ଶୁଣ ଗୋ ବିମ୍ବୋଷ୍ଠି ॥
କହିଣ ଆନନ୍ଦ ହୋଇଣ ପଦ୍ମ ଆକ୍ଷି । ରାଧିକାକୁ ବୋଲନ୍ତି ଯେ
ଦେଖ ପ୍ରାଣସଖୀ । ୪୩ । ସମାନ ଉଦର ଯେ ବିସ୍ତାରି ଅଛି ହେଲେ ।
କି କି ଅଛି ଭଲ କରି ଚାହିଁ କି ନା ଦେଖିଲେ । ୪୪ । ତାହା ଶୁଣି
ରାଧିକା ଉଠିଲେ ସ୍ଥିର ହୋଇ । ଶ୍ରୀହରିଙ୍କ ଉଦରକୁ ଦେଖିଲେକ
ଅନାଇ । ୪୫ । ଅ.ଶପ୍ତ ଗଣ୍ଡିରେ ଅଟଇ ଯେତେ ମେଠା । ପ୍ରଥମେ
ଦେଖିଲା ଯେ ସମୁଦ୍ର ସାତ ଗୋଟା । ୪୬ । ଦ୍ୱିତୀୟେ ଦେଖିଲା ଇନ୍ଦ୍ରଙ୍କର
ମେଘମାଳ । ତତ୍ପରେ ଆକାଶେ ବରଷୁଛନ୍ତି ଜଳ । ୪୭ । କେବଣ
ସ୍ଥାନରେ ଅଗ୍ନି ବିକଟାଳ ଗର୍ଜେ । ପବନ ବହୁଅଛି କାହିଁ ମେରୁଗିରି
ଭଜେ । ୪୮ । ଦେଉଳ ମଣ୍ଡପ କାହିଁ ଦିବ୍ୟ ଶମ୍ମୁଣ୍ଡିଆ । ଜଗତୀ ଅଟ୍ଟାଳି
କାହିଁ ମେଢ଼ ଯେ ମଣ୍ଡିଥା । ୪୯ । କେଉଁଠାରେ ଅପୂର୍ବ ପୋଖରୀ
ଅଛି ହୋଇ । କେଉଁଠାରେ ନଦୀମାନ ଯାଉଛନ୍ତି ବହି । ୫୦ ।

କେବଣ ସ୍ଥାନରେ ଯୁଦ୍ଧ କରୁଛନ୍ତି ମାଲ । କେଉଁଠାରେ ଚରୁଛନ୍ତି ଗୋଧନର ପଲ । ୫୧ । କେଉଁଠାରେ ଭକ୍ଷନ୍ତି ଗୃହୀଲ ଭିକ୍ଷା ମାଗି । କେଉଁଠାରେ ଯୋଗୀମାନେ ବସିଛନ୍ତି ଜାଗି । ୫୨ । କେଉଁଠାରେ ବଣ ହବୁ ହୋଇଅଛୁ ଗୋପ୍ୟ । କେଉଁଠାରେ ତପୀମାନେ କରୁଛନ୍ତି ତପ । ୫୩ । କେବଣ ସ୍ଥାନରେ ବିଷ୍ଣୁପୁରାଣ ବଖ୍ୟାତ । କେଉଁଠାରେ ବ୍ରାହ୍ମଣ ଢ଼ନ୍ତି ବେଦଶାସ୍ତ୍ର । ୫୪ । ସାଧୁଜନ କେଉଁଠାରେ କାଳ କ୍ଷଣା ଧନ । କେଉଁଠାରେ ବସିଛୁ ଅପୂର୍ବ ହାଟମାନ । ୫୫ । କେଉଁ ଠାରେ ହେଉଅଛୁ କୀର୍ତ୍ତନର ରଙ୍ଗ । କେଉଁଠାରେ ପୂରିଣ ଧ୍ୱଣଇ ଶମ୍ଭୁଲିଙ୍ଗ । ୫୬ । କେଉଁଠାରେ ହରିବଂଶ ଚରିତ ପୁରାଣ । କେଉଁ-ଠାରେ ହେଉଅଛୁ ଭାରତ ବଖାଣ ॥ କେବଣ ସ୍ଥାନରେ ତହୁଁ ବୈକୁଣ୍ଠ ଯେ ଦିଶି । ଶ୍ରୀକୃଷ୍ଣଙ୍କୁ କୋଳେ ଧରି ମାଏ ଛନ୍ତି ବସି ॥ କେଉଁଠାରେ ମୀନରୂପ ଧରି ଚକ୍ରଧର । ଶଙ୍ଖାସୁର ମାରୁଛନ୍ତି ସମୁଦ୍ର ଭିତର ॥ କେଉଁ ଠାରେ କୂର୍ମରୂପ ଧରି ଭବଗ୍ରାହୀ । ନବଖଣ୍ଡ ମେଦିନୀ ପିଠିରେ ଛନ୍ତି ବହି ॥ କେଉଁଠାରେ ବରାହ ରୂପରେ ଛନ୍ତି ହରି । ନବଖଣ୍ଡ ମେଦିନୀ ଦନ୍ତରେ ଛନ୍ତି ଧରି ।୬୧। ନୃସିଂହ ମୂରତି ହୋଇ କେବଣ ସ୍ଥାନରେ । ହିରଣ୍ୟକୁ ବିଦାରୁ ଅଛନ୍ତି ଜାନୁପରେ । ୬୨ । ବାମନ ମୂରତି ପ୍ରଭୁ ବିଷ୍ଣୁ ତେଜୋମୟେ । ପାତାଳକୁ ବଳିଙ୍କୁ ଗୃହନ୍ତି ଧରି ପାଏ । ୬୪ । କେଉଁଠାରେ ପଶୁରାମ ହୋଇଣ ଯେ ଦେହି । ଅଯୋଧ୍ୟାକୁ କୋଳ-ବେଳେ ଓପାଳନ୍ତି ବାହି । ୬୩ । କେଉଁ ଠାରେ ରଘୁନାଥ ଆମ୍ଭଙ୍କୁ କୋଦଣ୍ଡ । ଯୋଡ଼ିଯୁ ଛିଙ୍କ କାଟୁଛନ୍ତି ଦଶଗ୍ରୀବ ମୁଣ୍ଡ । ୬୫ । କେଉଁଠାରେ ନନ୍ଦଘରେ ଅବତାର ହରି । ଯଶୋଦା କୋଳରେ ବସିଛନ୍ତି ବନମାଳୀ ।୬୬। କେଉଁଠାରେ କଳଙ୍କୀ ମୂରତି ଧରି ତଭି । ବେଳହସ୍ତେ ନେଇ ଖଣ୍ଡା ବିଶୁଅଛୁ ଶୋଭି । ୬୭ । କେଉଁଠାରେ ମାଳଜୀରୂପରେ ଜଗନ୍ନାଥ । ଧରିଛନ୍ତି ବଇଲୋଚନକାନ୍ଦର ହସ୍ତ ॥ କେଉଁଠାରେ ବିଷ୍ଣୁରୂପ ଧରିଛନ୍ତି ମୁନି । ମହାଯଜ୍ଞ କରୁଛନ୍ତି ଶ୍ରୀରାମଙ୍କୁ ଘେନି । ୬୯ । କେଉଁଠାରେ ବିସ୍ତାର କରିଣ ଭୁଜଦଣ୍ଡ । ଓଟାରିଣ ଭାଙ୍ଗୁଛନ୍ତି ଶିବଙ୍କ କୋଦଣ୍ଡ । ୭୦ । କେଉଁଠାରେ ଶ୍ରୀରାମ ମୂରତି

ଧରି ଦୃଷ୍ଟି । କେଉଁ ଠାରେ ସୀତାଙ୍କୁ ସେ ହେଉଛନ୍ତି ବନ୍ଧୁ । ୭୧ । କେଉଁ ଠାରେ ବନବାସ ଜଗତକରତା । କେଉଁ ଠାରେ ମୁନିମାନେ ଧରିଛନ୍ତି ଛତା ।୭୨। କେଉଁ ଠାରେ କଉଶଲ୍ୟା କରୁଛନ୍ତି କୋହ ॥ କେଉଁ ଠାରେ ଦଶରଥ ଛାଡ଼ୁଛନ୍ତି ଦେହ ॥ କେଉଁ ଠାରେ ମାୟା ମୃଗ ମାରିବାକୁ ଉଚ୍ଛି । କେଉଁ ଠାରେ ସୀତାଙ୍କୁ ସେ ରାବଣ ନେଉଛି ॥ କେଉଁ ଠାରେ ତେଜକୁ ନିସ୍ତାରିର ପୀତବାସ । ଚକ୍ର ପେଶି କୁମ୍ଭୀରକୁ କରୁଛନ୍ତି ନାଶ । ୭୫ । କେଉଁ ଠାରେ ଶୂନ୍ୟରୂପ ହୋଇଛନ୍ତି ଭଗବାନ । ଚନ୍ଦ୍ରମାଙ୍କୁ ବେଢ଼ିଣ ଉଦୟ ତାରାଗଣ ॥ କେଉଁ ଠାରେ ଅମର ମଣ୍ଡଳ ସ୍ୱର୍ଗବାସୀ । ସୁଧର୍ମା ସଭାରେ ଯେ ସମସ୍ତେ ଛନ୍ତି ବସି । ୭୭ । ଇନ୍ଦ୍ର ଚନ୍ଦ୍ର କୁବେର ବରୁଣ ବିଶ୍ୱକର୍ମା । କେଉଁ ଠାରେ ସ୍ତୁତି କରୁଛନ୍ତି ବେଦବ୍ରହ୍ମା । ୭୮ । କେଉଁ ଠାରେ ବଟପତ୍ରେ ଶୋଇଛନ୍ତି ହରି । ମାର୍କଣ୍ଡ ଋଷିଙ୍କି ଗର୍ଭରେ ଛନ୍ତି ଧରି ।୭୯। ବିଶ୍ୱରୂପ ପ୍ରକାଶ ହୋଇଛନ୍ତି କେଉଁ ଠାରେ । ଅଶେଷ ବ୍ରହ୍ମାଣ୍ଡ ଅଛି ଗର୍ଭର ଭିତରେ ॥ କେଉଁ ଠାରେ ସୁରପତି ସଙ୍ଗେ ବନମାଳୀ । ବାମକରେ ମନ୍ଦର ପର୍ବତ ଛନ୍ତି ତୋଳି ॥ କେଉଁ ଠାରେ କଦମ୍ବ ମୂଳରେ ବଜେ କାହ୍ନୁ । ବିଭଙ୍ଗ ହୋଇ ଧରି ବାଉଛନ୍ତି ବେଣୁ । ୮୨ । କେଉଁ ଠାରେ ଗୋପୀଙ୍କି ଓଗାଳୁଛନ୍ତି ବାଟ । ପିନ୍ଧିଲା ପଣନ୍ତ ଧରି ମାଗୁଛନ୍ତି ଘାଟ । ୮୩ । କେଉଁ ଠାରେ ବହୁଛି ଯମୁନା ନଦୀ ଜଳ । କେଉଁ ଠାରେ ଶ୍ରୀକୃଷ୍ଣ କରନ୍ତି ନାନାଖେଳ ॥ କେଉଁ ଠାରେ ବସ୍ତ୍ର ରଖିଛନ୍ତି ଗୋପୀନାଥ । କେଶିର ଗର୍ଭରେ ନେଇ କରୁଛନ୍ତି ହସ୍ତ । ୮୫ । କେଉଁ ଠାରେ ବୃନ୍ଦାବନେ ବିଜେ ବନମାଳୀ । ମୁଖବାଟେ ବ୍ରହ୍ମଅଗ୍ନି ଦେଉଛନ୍ତି ଗିଳି । ୮୬। କେଉଁ ଠାରେ ଶ୍ରୀକୃଷ୍ଣ ଅନନ୍ତ ଉଶାଳେ ରହି । କ୍ଷୀରଦାନେ ପୂତନାର ପ୍ରାଣ ହିନାଶଇ । ୮୭ । କେଉଁ ଠାରେ ଶକଟ ଢଳରେ ନନ୍ଦନାନ । ବେଳେ ଡାଉ ଭାଙ୍ଗୁଛନ୍ତି ଯାମଳାଅର୍ଜୁନ । ୮୮ । କେଉଁ ଠାରେ ଶ୍ରୀକୃଷ୍ଣ ମଦନ ଖେଦଭରେ । ରାଧିକାର ଚରଣ ଯେ ଧରିଛନ୍ତି କରେ ॥ ଗୋପାଳଙ୍କୁ ଦେଖ କାହିଁ ବନଭୋଜୀ କରି । କେଉଁ ଠାରେ ବ୍ରହ୍ମା ବତ୍ସା ନେଉଛନ୍ତି ହରି । ୯୦ । ଶଙ୍ଖ ଚକ୍ର ଗଦା ପଦ୍ମ ବିରାଜନ୍ତି

କାହିଁ । କେଉଁ ଠାରେ ଶୋଇଛନ୍ତି ଚତୁର୍ଭୁଜ ହୋଇ ॥ କେଉଁ ଠାରେ କମଳ ଡୋଳନ୍ତି ନନ୍ଦସୁତ । ଉଭଣେ କଠାଉ ମାଡ଼ି କରୁଛନ୍ତି ନାଟ ॥ ବିଶ୍ୱରୂପ କାୟା ବଢ଼ାଇଲେ ନନ୍ଦବଂଶୀ । କୋଟି କୋଟି ବ୍ରହ୍ମାଣ୍ଡ ଗର୍ଭରେ ପୂରିଅଛି ॥ ତାହା ଦେଖି ରାଧିକା ଯେ ହୋଇଲେ କାତର । ମହାଭୟ ଧାରଣ କମ୍ପିଲେ ଥରହର ॥ ବଳ ବୀର୍ଯ୍ୟ ଧୈର୍ଯ୍ୟ ଶରୀରୁ ଗଲା ତୁଟି । ଚକ୍ଷୁ ବୁଜିଣ ପଡ଼ିଲେ ଧରଣୀରେ ଲୋଟି ॥ ବିଶ୍ୱରୂପ ଦେଖିଣ ପଡ଼ିଲେ ମହୀଭିତରେ । ହତଜ୍ଞାନ ହୋଇଲେ ଚେତନା ନାହିଁ ଅଙ୍ଗେ ॥ ତାହା ଦେଖି ଶ୍ରୀକୃଷ୍ଣଙ୍କୁ ଲାଗିଲା ଯେ ବାଧା । ମରିଯାଇ ନିଜ ପ୍ରାଣବଲ୍ଲଭୀ ମୋ ରାଧା ॥ ଏତେକ ବିଚାରି ମନେ ମନେ ଜଗବନ୍ଧୁ । ତ୍ରିଭଙ୍ଗି ମାନୁଷରୂପ ଧଇଲେ କୃପାସିନ୍ଧୁ ॥ ଅଶେଷ ବ୍ରହ୍ମାଣ୍ଡ ଧରି ହୋଇ ଥିଲେ ମୋଟ । ସେହିକ୍ଷଣି ସେ ରୂପ ତେଜିଲେ ବିଶ୍ୱକୂଟ ॥ ମୋହନ ମୁରଲୀ ଗୋଟି ଧରି ପଦ୍ମଅକ୍ଷି । ରାଧିକାକୁ ବୋଇଲେ ଶୁଣ ଗୋ ପ୍ରାଣସଖି । ୧୦୦ । ଅମ୍ଭେ ଭିନ୍ନ ହୋଇଥିଲେ ଭୟ ଗୋ ନ ପାଅ । କେତେବେଳ ଯାଏ ଗୋ ନିଶ୍ଚିନ୍ତେ ନିଦ୍ରା ଯାଅ ॥ ତାହା ଶୁଣି ରାଧିକା ଯେ ଉଠିଲେ ତରସି । ମୋହନ ରୂପକୁ ଚାହିଁ ଅଳ୍ପ ଅଳ୍ପ ହସି ॥ ବିଶ୍ୱକାୟା ଲୁଚାଇ ବୋଲନ୍ତି ଚକ୍ରପାଣି । ଦେଖିଲ ରେ କଥା ପାଶୋରିଲ ଗୋପାଳୁଣୀ ॥ ରାଧିକା ବୋଇଲେ ତୁମ୍ଭେ ଶୁଣ ଯୋଗନିଦ୍ରା । ଏହିକ୍ଷଣି ପ୍ରଭୁ ମୁଁ ଯେ ଯାଇଥିଲି ନିଦ୍ରା । ସ୍ୱପନେ କି ଏମନ୍ତ ଦେଖିଲି ନନ୍ଦବଂଶୀ । ଅଶେଷ ବ୍ରହ୍ମାଣ୍ଡ ତୁମ୍ଭ ଗର୍ଭେ ପୂରିଅଛି ॥ ଶ୍ରୀକୃଷ୍ଣ ବୋଇଲେ ରାଧା କିଛିହିଁ ନ ଜାଣୁ । ଆମ୍ଭର କହିଲାକୁ ତ ମିଛ ପ୍ରାୟେ ମଣୁ ॥ ଏହିକ୍ଷଣି ଗର୍ଭ ମୁହିଁ ବ୍ୟସ୍ତ ହେବ ଯେବେ । ଗୋପାଳଙ୍କ ଯୋଗାଡ଼ ସେ କି ଅଣ୍ଟିବ ତେବେ ॥ ଏଥି ତୁମ୍ଭେ ସ୍ଥିର ହୋଇ ଥାଅ ନବବାଳୀ । କ୍ଷଣକ ଭିତରେ ମୁଁ ଯେ ସବୁ ଦେବି ଚିହ୍ନି ॥ ବିଶ୍ୱମାୟା ଜାଣିଛ ଅଛନ୍ତି ନରହରି । ଅଭେଦ କଥାକୁ କେ ପାରିବ ଭେଦ କରି ॥ ରାଧିକା ବୋଇଲେ ତୁମ୍ଭେ ଶୁଣ ଦୟାନିଧି । ସତ ପ୍ରାୟେ ମୁଁ ମଣଇ ସ୍ୱପନର ବିଧି ।୧୧୦। ଶ୍ରୀକୃଷ୍ଣ ବୋଇଲେ ଆଗୋ ଶୁଣ ନବବାଳା । ବୁଝାଇ କହିଲେ ତୁ ଭାବରେ ହେଉ ଭୋଳା ॥ ଏହି ବିଶ୍ୱରୂପ ବ୍ରହ୍ମା ନ ପାରଇ ଦେଖି । ତାହା ତୁହି

ପ୍ରତ୍ୟକ୍ଷେ ଦେଖିଲୁ ଚନ୍ଦ୍ରମୁଖି ॥ ବିଶ୍ୱରୂପ ଦେଖି ତୁ ଗୋ ମୋହ ଗଲୁ ଯେଣୁ । ସତେତେହେଁ ଦେଖିଲେ ତୁ ସ୍ୱପନ ପ୍ରାୟେ ମଣୁ ॥ ରାଧିକା ବୋଇଲେ ପ୍ରଭୁ ପ୍ରତ୍ୟକ୍ଷେ ଦେଖିଲି । ଏତେହେଁ ତ ପ୍ରଭୁ ବୋଲି ଏବେ ମୁଁ ଜାଣିଲି ॥ ଏତେ ବୋଲି ମଉନ ହୋଇଲେ ଭାବବତୀ । ମନେ ମନେ ବିଚାର କରନ୍ତି ଶ୍ରୀପତି ॥ ଅନ୍ତର୍ହିତେ ବିଚାର କରନ୍ତି ଭାବଗ୍ରାହୀ ଗୋପକ୍ରୀଡ଼ା କରିବା ଯେ ଗୋପିମାନ ରହି ॥ ଯେଉଁ ବୃନ୍ଦାବନେ ସର୍ବ ଗୋପୀଙ୍କର ମେଳି । ଛନଦିନଯାଏ ତହିଁ କରିବା ଯେ କେଳି ॥ ଅଷ୍ଟବେତାଳଙ୍କୁ ଆଜ୍ଞା ଦେଲେ ଭଗବାନ । ବୃନ୍ଦାବନେ ଥୁଅ ନେଇ ଉପହାର ମାନ ॥ ପ୍ରଭୁଙ୍କର ଆଜ୍ଞା ପାଇ ସେ ଅଷ୍ଟବେତାଳ । ଉପହାର ଦ୍ରବ୍ୟ ବୃନ୍ଦାବନେ କଲେ ଠୁଳ ॥ ରାଧିକାର କରଧରି ପ୍ରଭୁ ଭାବଗ୍ରାହୀ । କଦମ୍ବ ମୂଳରେ ପ୍ରଭୁ ବିଜେ କଲେ ଯାଇ ॥ ଅପୂର୍ବ ବିରହ ବେଣୁ ବାମକରେ ଧରି । ସ୍ଥିର କରି ବାଇଲେ ଗୋପୀଙ୍କ ନାମ ଧରି ॥ ଘନ ଘନ ଶୁଭୁଅଛି ମୁରଲୀର ଧ୍ୱନି । ଶୁଣିକରି ଉଚ୍ଚାଟ ହୋଇଲେ ଗୋପାଙ୍ଗିଣୀ ॥ ଜାତି କୁଳ କୁଟୁମ୍ବ ଛାଡିଲେ ସବୁ ଲଜ୍ଜା । ପର ବର ଚହଟେ ସକଳ କଲେ ତେଜ୍ୟା ॥ ଘରେ ଥାଇ ଉଚ୍ଚାଟ ହୋଇଲେ ଗୋପବାଳୀ । ଛାଞ୍ଚିଷ୍ଟ ଦଣ୍ଡିଥେ ଯାଇ ବୃନ୍ଦାବନେ ମିଳି ॥ ବିଶ୍ୱମାୟା ଭିଆଇ ଅଛନ୍ତି ନନ୍ଦ କାହ୍ନୁ । ସେ ଭାବରେ ରାଧିକାଙ୍କୁ ଶୁଭୁନାହିଁ ବେଣୁ ॥ ଇନ୍ଦ୍ରଜାଲମାୟା କରିଛନ୍ତି ଭାବଗ୍ରାହୀ । ଗୋପୀଙ୍କର ଆସିବା ରାଧିକା ନ ଜାଣଇ ॥ ଯୁବତୀଙ୍କି ଗୃହେ ଆଜ୍ଞା ଦେଲେ ଚକ୍ରଧର । ଯେ ଯାହା ଇଚ୍ଛାରେ ଏ ଭୋଗକୁ ପୂର କର ॥ ଛନଦାଏ ଯାଏ ତୁମ୍ଭେ ଆସୁଥିବ ବାଳୀ । ନାନାଭୋଗ ଭୁଞ୍ଜିବା କରିବା ରସକେଳି ॥ ଗୋପୀଏ ବୋଇଲେ ତୁମ୍ଭେ ଶୁଣ ଭଗବାନ । ତୁମ୍ଭ ଆଜ୍ଞା ପରମାଣେ ଆସିବୁଁ ବହନ ॥ ଏଥୁଅନନ୍ତରେ କଥା ଶୁଣ ଧ୍ୟାନ ପ୍ରୀତି । ଷଣକେ ହୋଇଲେ ପ୍ରଭୁ ଅନନ୍ତ ମୂରତି । ୧୩୯ । ଗୋଟିଏ ଗୋଟିଏ ଗୋପୀ ସମସ୍ତେ ମିଳିଲେ । ତ୍ରିଭଙ୍ଗିମା ଗୋପୀନାଥ ଗୋପକ୍ରୀଡ଼ା କଲେ ॥ ଏହିରୂପେ ଗୋପୀଙ୍କି ଚମ୍ପିଲେ ଛନାବନ୍ତ । ଏ ମାୟା ନ ଜାଣେ ରାଧା ଜୀବଛନ୍ଦେ ମାତି ଗୋପକ୍ରୀଡ଼ା ବିନୋଦ ସାରଣ ଚକ୍ରଧର ।

ଗୋପୀଙ୍କି ବୋଇଲେ ଯାଅ ଯେ ଯାହାର ପୁର ॥ ଆଜ୍ଞା ପାଇ ବାହାର ହୋଇଲେ ଗୋପବାଳୀ । ଯେ ଯାହା ମନ୍ଦିରେ ଯାଇଁ ସମସ୍ତେହେଁ ମିଳି ॥ ରାଧିକାଙ୍କୁ ଘେନି ଶ୍ରୀ ରସିକ ଚୂଡ଼ାମଣି । ଚନ୍ଦ୍ରସେଣା ପୁରକୁ ଆଇଲେ ଚକ୍ରପାଣି ॥ ଶ୍ରୀକୃଷ୍ଣଙ୍କ ମୁଖ ଚାହିଁ ବୋଲେ ନବବାଳୀ । ଏବେ ତୁମ୍ଭେ ମନ୍ଦିରକୁ ଯାଅ ବନମାଳୀ ॥ ଏତେମାତ୍ର ମାଗୁଅଛୁ ଶୁଣ ନନ୍ଦସୁଅ । ସ୍ମରିଲେ ଦେଖିବୁ ତୁମ୍ଭର ଚନ୍ଦ୍ରମୁହଁ ॥ ଶ୍ରୀକୃଷ୍ଣ ବୋଇଲେ ସଖି ଶୁଣ ମୋ ବଚନ । ତୋର ମୋର ଏକ ଅଙ୍ଗ ନାହିଁ ଭିନ୍ନାଭିନ୍ନ ॥ ଏତେ ବୋଲି ରାଧିକାଙ୍କୁ ଛାଡ଼ି ଜଗବନ୍ଧୁ । ନନ୍ଦ ମନ୍ଦିରକୁ ବିଜେ କଲେ କୃପାସିନ୍ଧୁ ॥ ମାୟା କୁମରକୁ ପ୍ରଭୁ ଅନ୍ତର୍ଦ୍ଧାନ କଲେ । ସ୍ଥିର ହୋଇ ବଳରାମ କୋଳରେ ଶୋଇଲେ । ୧୪୦ । ଏଥୁଅନ୍ତରେ ତହିଁ ରଜନୀ ପାହିଲା । ଶଙ୍ଖଧ୍ୱନି ଶୁଣିଣ ଯୁବକଙ୍କୁ ଚେତା ଦେଲା ॥ ସମସ୍ତ ଗୋପାଳମାନେ ଏକଠୁଳ ହୋଇ । ଚନ୍ଦ୍ରସେଣା ଦୁଆରେ ମିଳିଲେ ସର୍ବେ ଯାଇ । କବାଟ କିଳଣି ଖଞ୍ଜା ଯାଇଅଛି ଖସି । ଶଶୀମୁଖୀ ରାଧିକା ପଲଙ୍କେ ଅଛି ବସି ॥ ତାହା ଦେଖି ଚନ୍ଦ୍ରସେଣା ଉପତ ହୋଇଲା ରାଧିକାଙ୍କୁ ଘେନିଣ ଅନେକ ଶୋକ କଲା ॥ ରାଧିକା ବୋଇଲେ ତୁମ୍ଭ ବ୍ରତର ପ୍ରସାଦେ । ଭୂତର ଦାଉରୁ ମୁଁ ବଞ୍ଚିଲି ଅପ୍ରମାଦେ ॥ ଶୋଇ-ଥିଲି ଭିତରେ କବାଟମାନ ପାଡ଼ି । ପକ୍ଷୀରୂପେ ଭୂତ ମୋତେ ବସିଲା ଯେ ମାଡ଼ି । ଘୋରରଡ଼ି ଦେଇ ସେହୁଁ ଗର୍ଜନ ଛାଡ଼ିଲା । ମହାଭୟ ପାଇ ଆତ୍ମା ଆକାଶେ ଉଡ଼ିଲା ॥ ହତଜ୍ଞାନ ହୋଇ ମୁଁ ପଡ଼ିଲି ମୂର୍ଚ୍ଛା-ଯାଇ । ନିଶ୍ୱାସ ମାତ୍ରକ ଥିଲା କିଛି ଜାଣେ ନାହିଁ ॥ ଏସନେକ ବଚନ କହନ୍ତେ ନବବାଳୀ । ନନ୍ଦରାଜା ସଦନେ ସମସ୍ତେ ଯାଇଁ ମିଳି । ଗୋପ ନଗରସାକ ଯେ ଶୁଭିଲା ଚହଲ । ରାଧିକା ବର୍ତ୍ତିଲା ଆଜ ବାଜିଗଲା ଗୋଲ ॥ ମୁହୂର୍ତ୍ତେ ଜଣାଇଲା ରାଣୀଙ୍କର ପାଶ । ରାଧିକାଙ୍କୁ ଦେଖିବ ବହନ ହୋଇ ଅସ । ମଣ୍ଡଳ ଆକାର ହୋଇ ଅଛନ୍ତି ଗୋପାଳ । ମହାପ୍ରାଣୀ ଲେଉଟି ବର୍ତ୍ତିଲା ଆଉ ବେଳ ॥ ତାହା ଶୁଣି ଯଶୋଦାନ୍ତ୍ରୀ ଆସନ ଉପେକ୍ଷି । ଶ୍ରୀକୃଷ୍ଣ ବୋଇଲେ ମାଏ ଆମ୍ଭେ ଯିବୁଁ ଦେଖି ॥ ବିପରୀତ କଥା ଆମ୍ଭେ ଦେଖିବୁଁ କାହିଁତ । କେଉଁଠାରେ ମୋ

ମାଇଁଙ୍କ ଲାଗିଥିଲା ଭୂତ । ବଳରାମ ବୋଇଲେହେଁ ଅମ୍ଭେ ଦେଖିଯିବୁଁ । ବେନି ଭାଇ ଅମ୍ଭେ ଯାଇଁ ମାଇଁଙ୍କ ଦେଖିବୁଁ ॥ ଏତେ ବୋଲି ଶ୍ରୀକୃଷ୍ଣ ଧାଇଁଲେ ଅତି ଖରେ । ବେନିଭାଇ ଧଇଲେ ଯଶୋଦା ବେନିକରେ ॥ କଞ୍ଚୁକେ ବିଜୟ ସେ କଲେ ହୃଷୀକେଶ । ରାଧିକା ମନ୍ଦିରେ ଯାଇଁ ହେଲେ ପରବେଶ ॥ ଚନ୍ଦ୍ରଖଟ ପରେ ବସିଥିଲେ ଶୁଭ୍ରକେଶୀ । ଶ୍ରୀକୃଷ୍ଣଙ୍କୁ ଗୃହିଁଣ ଅଲପ ଦେଲେ ହସି ॥ ରାଧିକା ବୋଇଲେ ହଟନାଗରଙ୍କ ଗୁରୁ । ଷଣକ ଭିତରେ ପ୍ରଭୁ କେତେ ରୂପ ଧରୁ । ୧୬୦ । ଅନେକ ମୂରତି କାହ୍ନା କେ ପାରିବ ଜାଣି । ଅନନ୍ତପୁରୁଷ ତୁ ଜଗତ-ଶିରୋମଣି ତେତେବେଳେ ଧରିଥିଲୁ ବିଷ୍ଣୁ ମାୟା ଗୋଟି । ଏତେବେଳେ ଧରିଅଛୁ ହିଙ୍ଗୁଳ ମୂରତି ॥ ଏସନ ବୋଲିଣ ସ୍ତୁତି କଲେ ନବବାଳୀ । ଅନ୍ତର୍ଯ୍ୟାମି ଠାକୁର ଜାଣିଲେ ମନେ ଭାଳି ॥ ହସ ହସ ହୋଇ ପ୍ରଭୁ ମାତାଙ୍କୁ ଛୁଇଁଲେ । ରାଧିକାର ଗଳାଧରି ଲମ୍ବିଣ ପଡିଲେ ॥ କୋଳରେ ବସିଣ ପୃଚ୍ଛା କରନ୍ତି ଅନନ୍ତ । କେଉଁଠାରେ ମାଇଁ ତୋତେ ଲାଗିଅଛି ଭୂତ ॥ ବିପରୀତ କଥା ସବୁ ଶୁଣି ବେନି ଭାଇ । ଗମ୍ଭୀର ଭିତରେ ଅମ୍ଭେ ଲୁଚିଥିଲୁଁ ଯାଇଁ ॥ ରାଧିକା ବୋଇଲେ ତୁମ୍ଭେ କହୁଅଛ ଯାହା ଏ ବେଭାରେ ଡ଼ରୁଅଛି ବୋଲି ଜାଣିନାହିଁ ମୁଁ ତାହା । ଏହା ଶୁଣି ରାଧିକା ବୋଲନ୍ତି ପଦ୍ମମୁଖ । ପଲଙ୍କରୁ ଉଠି ମାଇଁ ମୋତେ କର କାଖ ॥ ତୁ ଯେବେ ବର୍ତ୍ତିଲୁ ଗୋ ସବୁହିଁ ହେଲା ଭଲ । ଘରେ କାହିଁ ବହିଥିବା ବାହାରକୁ ଚାଲ ॥ ତାହା ଶୁଣି ବହନ ଉଠିଲେ ନବବାଳୀ । ଶ୍ରୀକୃଷ୍ଣଙ୍କୁ କାଖ କରି ବାହାରକୁ ଚାଲି । ୧୭୦ । ସମସ୍ତେହେ ଦେଖିଲେ ଶ୍ରୀକୃଷ୍ଣ ରାଧା ରୂପ । ଛୁଡିଗଲା କୋଟିଏ ଜନ୍ମର ମହାପାପ । ଚଳିଲେ ଗୋ । ୯ ଟୋଏ ଯେ ଯାହାର ଘର । ଚନ୍ଦ୍ରସେଣା ପାଶ୍ୱେଠି ଅଇଲା ଖଣ୍ଡେ ଦୂର ॥ ସରିଲା ଏ ଭୂତକେଳି ବିପରୀତ ସନ୍ଧି । ଶ୍ରୀକୃଷ୍ଣ ଚରଣତଳେ ଦୀନକୃଷ୍ଣ ବନ୍ଦି ॥ ବିଧୂର ପ୍ରତିଜ୍ଞା ଅଟେ ଯାହାଙ୍କ ଚରଣେ ସେହି ପଦ୍ମପାଦ ତଳେ ପଶିଲି ଶରଣ । ୧୭୪ ।

—ସମାପ୍ତ ।—

କଟକ-ମନମୋହନ ପ୍ରେସରେ ଶ୍ରୀ ମୋହନ ଚରଣ ଦାସଙ୍କ ଦ୍ୱାରା ମୁଦ୍ରିତ ।